ନିଜର ଜୀବନୀ ସଙ୍କଳିତ କରିବା ପାଇଁ ମୋତେ ବହୁ ଶୁଭେଚ୍ଛୁ ଏବଂ ହିତାକାଂକ୍ଷୀ ବନ୍ଧୁମାନେ କହି ଆସୁଛନ୍ତି । ଏପରିକି ମୋର କଥିତ ବର୍ଣ୍ଣନାକୁ ଲିପିବଦ୍ଧ କରି ସଙ୍କଳନର ରୂପ ଦେବାକୁ ଆଗ୍ରହ ପ୍ରକାଶ ମଧ୍ୟ କରିଥିଲେ । ମୋ ଜୀବନକାଳର ସମସାମୟିକ ଘଟଣା ତଥା କାର୍ଯ୍ୟାବଳୀର ସୂଚନା ସେଥିରୁ ମିଳିପାରିବ ବୋଲି ସେମାନଙ୍କ ଆକାଂକ୍ଷା ।

ଛଅଦଶକ ପ୍ରାୟ ସାଧାରଣ ଜୀବନରେ ସର୍ବଦା ପ୍ରଚାର ଅପେକ୍ଷା କାର୍ଯ୍ୟକୁ ମୁଁ ଗୁରୁତ୍ୱ ପ୍ରଦାନ କରିଆସିଛି । ପରିଶେଷରେ ବନ୍ଧୁମାନଙ୍କ ଅନୁରୋଧକୁ ରକ୍ଷାକରି ମୋର କାର୍ଯ୍ୟକାଳର ସ୍ମରଣୀୟ କିୟଦଂଶକୁ ଏଥିରେ ସ୍ଥାନିତ କଲି । ଏହି ପୁସ୍ତିକା ପ୍ରକାଶନରେ ନିସ୍ୱାକ୍ଷଣ ଢଙ୍ଗରେ ସହଯୋଗ କରିଥିବାରୁ ସୁସାହିତ୍ୟିକ, ବୁଦ୍ଧିଜୀବୀ ଶ୍ରୀମାନ ଶରତ ନାରାୟଣ ବେହେରାଙ୍କ ଠାରେ କୃତଜ୍ଞ ।

ଯୁବ ମୁଦ୍ରାକର ଶ୍ରୀ ପ୍ରହଲ୍ଲାଦ ବାଗ ଧନ୍ୟବାଦାର୍ହ ।

କାଦମ୍ବରୀ,
ଧନୁପାଲି, ସମ୍ବଲପୁର

ବନମାଲୀ ବାବୁ

# ମୋ ନିଜ କଥା

ମୋର ଜନ୍ମ ୧୯୧୮ ମସିହା ମାର୍ଚ୍ଚ ମାସ ୯ ତାରିଖ ଦିନ ମାତାମହ, ଶ୍ରୀ ରାମ ନାରାୟଣ ମିଶ୍ରଙ୍କ ସମ୍ବଲପୁରର ଝାଡ଼ୁଆପଡ଼ାସ୍ଥିତ ବାସଭବନଠାରେ । ପ୍ରଥମେ ମୋର ନାମ ଥିଲା ପୂର୍ଣ୍ଣଚନ୍ଦ୍ର । ପରେ, ତାହା ବନମାଳୀ ହେଲା । ଆମର ଗୋତ୍ର କାଶ୍ୟପ ।

ସମ୍ବଲପୁର ଜିଲ୍ଲାର ଶପିଲିମା ନିକଟବର୍ତ୍ତୀ ସଖିଯୋର ଗ୍ରାମର ବୈକୁଣ୍ଠ ପଣ୍ଡା ମୋର ପିତାମହଙ୍କ ପୂର୍ବପୁରୁଷ । ଏହି ପଣ୍ଡା ପରିବାର ପ୍ରାକ୍ତନ ସୋନପୁର ରାଜ୍ୟ ତଥା ଅଧୁନା ସ୍ୱତନ୍ତ୍ର ଜିଲ୍ଲାରେ ପରିଣତ ସୁବର୍ଣ୍ଣପୁରର ଗଣେଶପୁର ଗ୍ରାମରୁ ଚାଲିଆସି ସଖିଯୋର ଗ୍ରାମରେ ସ୍ଥାୟୀ ଭାବରେ ବସବାସ ଆରମ୍ଭ କରିଥିଲେ । ୧୮୫୭ ମସିହାରେ ପ୍ରଥମ ସ୍ୱାଧୀନତା ଆନ୍ଦୋଳନ ପୂର୍ବରୁ ସମ୍ବଲପୁରର ଶେଷରାଜା ଆମର ପୂର୍ବପୁରୁଷ ସୋମନାଥଙ୍କୁ ପୌଷ୍ୟପୁତ୍ର ରୂପେ ଗ୍ରହଣ କରିଥିଲେ ଏବଂ କେତେ ଗୋଟି ଗ୍ରାମ ଓ ଅନ୍ୟାନ୍ୟ ସମ୍ପତ୍ତିର ବ୍ୟବସ୍ଥା କରି ଦେଇଥିଲେ ।

ସେହି ସମୟରେ ଶାସକମାନେ ଏକ ବ୍ରାହ୍ମଣ ପରିବାରର ସନ୍ତାନମାନଙ୍କୁ ପୌଷ୍ୟ ପୁତ୍ର ରୂପେ ଗ୍ରହଣ କରିବାର ପ୍ରଥା ପ୍ରଚଳିତ ଥିଲା । ଏବଂ ଏହି ପ୍ରଥା ଅନୁସାରେ ସୋମନାଥଙ୍କ ସଞ୍ଜ୍ଞା ବଦଳି "ପଣ୍ଡା"ରୁ "ବାବୁ"କୁ ପରିବର୍ତ୍ତିତ ହୋଇଥିଲା । ସୋମନାଥ ମହାନଦୀର ଘାଟମାନଙ୍କରୁ ଟେସ୍ ଆଦାୟ କରିବାର ଅଧିକାର ହାଇ ପାଇଥିଲେ । କିଛି ଦିନ ପରେ ସେ, ସଖିଯୋର୍ ଗାଁ ଛାଡ଼ି ସମ୍ବଲପୁର ସହରକୁ ଚାଲିଆସିଥିଲେ ମଧ୍ୟ ପରିବାରର ଅନ୍ୟ ସଦସ୍ୟ ମାନେ ସେହି ଗାଁରେ ରହିଯାଇଥିଲେ । ବର୍ତ୍ତମାନ ମଧ୍ୟ ସେମାନଙ୍କ ବଂଶଧର ମାନେ ସଖିଯୋର୍‌ରେ ବସବାସ କରୁଅଛନ୍ତି । ତାଙ୍କର ତିନି ପୁତ୍ର ସାବାଳକ ହେବାପରେ ସୋମନାଥ ଜ୍ୟେଷ୍ଠ ପୁତ୍ର ମଦନ ମୋହନଙ୍କୁ ଅଲଗା କରିଦେଇଥିଲେ । ମଦନ ମୋହନଙ୍କ ଇଂରାଜୀ ଭାଷାରେ ଭଲ ପ୍ରବେଶ ଥିଲା । ସେ, ଇଂରାଜୀରେ ଲେଖିବା, ପଢ଼ିବା ସହ ସ୍ପଷ୍ଟ କହି ପାରୁଥିଲେ । ଅଳ୍ପ ବୟସରେ ତାଙ୍କର ବିୟୋଗ ହେବାରୁ ବିଧବା ପତ୍ନୀ ବୃନ୍ଦାବତୀଙ୍କୁ ପରିବାରର ସମସ୍ତ ଦାୟିତ୍ୱ ବହନ କରିବାକୁ

ପଡ଼ୁଥିଲା । ବୃନ୍ଦାବତୀ ହେଉଛନ୍ତି ମୋର ପିତାମହୀ । ସେ ଆଧ୍ୟାତ୍ମିକ ପ୍ରକୃତିର ଜଣେ ଜୀବନ୍ମୁକ୍ତ ଆତ୍ମା ଥିଲେ । ଅଲୌକିକ ଶକ୍ତିର ସନ୍ଦର୍ଶନ ମିଳୁଥିବା ଅନୁଭବ କରି ଅନେକେ ତାଙ୍କର ଶିଷ୍ୟ ମଧ୍ୟ ହୋଇଥିଲେ ।

ସମ୍ବଲପୁରରେ ସ୍କୁଲ ଶିକ୍ଷା ଶେଷ କରି ମୋର ପିତା ଗୋକୁଳ ଚନ୍ଦ୍ର ବାବୁ କଲିକତାରେ ଉଚ୍ଚ ଓ ଆଇନ ଶିକ୍ଷା ଲାଭ କରିଥିଲେ । ସାମୁଏଲ ଦାସ ଏବଂ ଦୟାନିଧି ମିଶ୍ର ପ୍ରମୁଖ ତାଙ୍କର ସମ୍ବଲପୁର ସ୍କୁଲର ସହପାଠୀ ଥିଲେ । ଶ୍ରେଣୀରେ ପ୍ରଥମ, ଦ୍ୱିତୀୟ ଓ ତୃତୀୟ ସ୍ଥାନ ଅଧିକାର ପାଇଁ ସେହି ମାନଙ୍କ ମଧ୍ୟରେ ବରାବର ପ୍ରତିଯୋଗିତା ହେଉଥିଲା । କଲିକତାରେ ଅଧ୍ୟୟନ କାଳରେ ଶ୍ୟାମା ଚରଣ ତ୍ରିପାଠୀ ଆଇ.ସି.ଏସ୍, ଡକ୍ଟର ପ୍ରାଣକୃଷ୍ଣ ପରିଜା, ଶଙ୍କର ପ୍ରସାଦ ମିଶ୍ର, ବିଶ୍ୱନାଥ ଦାସ, ଭୁବନାନନ୍ଦ ଦାସ, ବ୍ରଜ ମୋହନ ପଣ୍ଡା ଏବଂ ବଂଶୀଧାନନ୍ଦ ଦାସ ପ୍ରମୁଖ ପିତାଙ୍କର ସହପାଠୀ ଥିଲେ ।

ସମ୍ବଲପୁରରେ ତାଙ୍କର ଘନିଷ୍ଠ ବନ୍ଧୁ ମାନଙ୍କ ଭିତରେ ଥିଲେ ବାଲେଶ୍ୱର ପଣ୍ଡା, ଶ୍ୟାମ ସୁନ୍ଦର ବେହେରା, ଡାକ୍ତର ସନାତନ ବେହେରା, ଭରତ ଚନ୍ଦ୍ର ନାୟକ, ଅଚ୍ୟୁତାନନ୍ଦ ପୁରୋହିତ, ଡାକ୍ତର ଜନାର୍ଦ୍ଦନ ପୂଜାରୀ ଏବଂ ପର୍ଶୁରାମ ମିଶ୍ର ଇତ୍ୟାଦି । ଅସହଯୋଗ ସମୟରେ ସେମାନେ ଅନେକ ସମୟରେ ଏକାଠି ହେଉଥିଲେ ।

ପିତା ଥିଲେ ସହରର ବିଶିଷ୍ଟ ଉକିଲ ଏବଂ ଦୀର୍ଘ ବର୍ଷ କାଳ ଜିଲ୍ଲା (ଡିଷ୍ଟ୍ରିକ୍ଟ) ବୋର୍ଡର ଚେୟାରମେନ ହୋଇଥିଲେ । ସେ ଥିଲେ ଜଣେ ସତ୍ୟନିଷ୍ଠ, ଆଦର୍ଶବାଦୀ ଦେଶଭକ୍ତ । ଜିଲ୍ଲାବୋର୍ଡ ପରିଚାଳନାରେ ତାଙ୍କର ଦକ୍ଷତା ହେତୁ ରାୟ ସାହେବ ଉପାଧି ଲାଭ କରିଥିଲେ ।

ମାଁ ଦେବହୂତି ଥିଲେ ଅତ୍ୟନ୍ତ ଧର୍ମପ୍ରାଣା, ଅତିଥି ପରାୟଣା, ବନ୍ଧୁବତ୍ସଳା । ବଦାନ୍ୟତା ଓ ଉଦାରତା ପାଇଁ ତାଙ୍କର ସୁଖ୍ୟାତି ଥିଲା । ୧୯୩୭ ମସିହାରେ ମାଁଙ୍କର ମୃତ୍ୟୁ ହେଲା ଏବଂ ତାପରେ ପିତା ଓକିଲାତି ଛାଡ଼ି ଦେଇଥିଲେ । ପାର୍ଥିବ ଜଗତ ପ୍ରତି ଆସକ୍ତି ହ୍ରାସ ପାଇଲା ଓ ସେ ଝାଡ଼ୁଆପଡ଼ାର ବାସଭବନରେ ଅଧିକାଂଶ ସମୟ ନିଜକୁ ଆବଦ୍ଧ କରି ରଖିଲେ । ସତତ ଭଗବତ ଚିନ୍ତାରେ ବ୍ୟାପୃତ ରହି ଖାଦ୍ୟ ଓ ସାଂସାରିକ ଜୀବନ ପ୍ରତି ଅନାସକ୍ତି ହେତୁ ତାଙ୍କର ସ୍ୱାସ୍ଥ୍ୟ ଧିରେ ଧିରେ ଭାଙ୍ଗି ପଡ଼ିଲା ।

୧୯୪୮ ରେ ସେ ଦେହତ୍ୟାଗ କଲେ । ସେହିବର୍ଷ ସାନଭାଇ ପ୍ରଫୁଲ୍ଲ ମଧ୍ୟ ମାତ୍ର ଅଠର ବର୍ଷ ବୟସରେ ପେଣ୍ଡ୍ରା ସ୍ୱାସ୍ଥ୍ୟନିବାସରେ ପ୍ରାଣତ୍ୟାଗ କଲା । ଶ୍ରୀମାଳିକ ତାରା ପ୍ରସାଦ ମିଶ୍ରଙ୍କ ସହ ମୋର ସାନଭଉଣୀ ପ୍ରସନ୍ନୀ ବିବାହ ସମ୍ପନ୍ନ ହେବାର ମାତ୍ର କଣ୍ଟମାସପରେ ବାର ବର୍ଷ ବୟସରେ ମୃତ୍ୟୁ ବରଣ କଲା । ପିତାମହୀ ବୃନ୍ଦାବତୀ ୧୯୪୪ ରେ ଏବଂ ବିଧବା ପିଉସୀ ଜନକପ୍ରିୟା ୧୯୬୫ରେ ଇହଲୀଳା ସମ୍ବରଣ କଲେ ।

ମୋର ମାଁଙ୍କ ପିତାମହ ଧରଣୀଧର ମିଶ୍ର ଥିଲେ ସମ୍ବଲପୁର ଜିଲ୍ଲାର ପ୍ରଥମ ମେଟ୍ରିକୁଲେଟ । ସେ କଲିକତାରେ ଶିକ୍ଷାଲାଭ କରିଥିଲେ । ସେ ଥିଲେ ଓଡ଼ିଶାର ଜଣେ ପ୍ରଥମ ଶ୍ରେଣୀର ନାଗରିକ । ତାଙ୍କର ନିଜର ଗୋଟିଏ ଛାପାଖାନା ଥିଲା ଏବଂ ସମ୍ବଲପୁରବାସୀଙ୍କ ମଧ୍ୟରେ ଚେତନା ଜାଗ୍ରତ କରିବା ଉଦ୍ଦେଶ୍ୟରେ ଗୋଟିଏ ଖବର କାଗଜ ପ୍ରକାଶ କରୁଥିଲେ । ଓଡ଼ିଆ ଭାଷାକୁ ସମ୍ବଲପୁର ଅଞ୍ଚଳର ଭାଷାଭାବରେ ଗ୍ରହଣ କରିବାକୁ ଏବଂ ସମ୍ବଲପୁରକୁ ଓଡ଼ିଶା ସହିତ ମିଶାଇବାପାଇଁ ଆନ୍ଦୋଳନର ସୂତ୍ରପାତ କରିଥିଲେ । ବଡ଼ଲାଟ ଏଲଗିନ ଓ କର୍ଜନଙ୍କ ପାଖରେ ଦାବୀ ଉପସ୍ଥାପନ ପାଇଁ ଭାରତର ଗ୍ରୀଷ୍ମ କାଳୀନ ରାଜଧାନୀ ସିମଲାକୁ ଅନ୍ୟମାନଙ୍କ ସହ ସେ ଯାଇଥିଲେ ।

ମୋର ମାତାମହ ରମନାରାୟଣ ମଧ୍ୟ ଜଣେ ପ୍ରବୀଣ ଉତ୍କଳ ଥିଲେ ଏବଂ ଓଡ଼ିଶାର ଜଣେ ଅଗ୍ରଣୀ ନାଗରିକ ଥିଲେ । ସେ ଅନେକ ଗରିବ ଛାତ୍ରଙ୍କୁ ଶିକ୍ଷାପାଇଁ ସାହାଯ୍ୟ କରୁଥିଲେ । ଅନେକ ଲେଖକ ମଧ୍ୟ ପୁସ୍ତକ ପ୍ରକାଶନ ପାଇଁ ତାଙ୍କ ପାଖରୁ ଆର୍ଥିକ ସହାୟତା ଲାଭ କରିଥିଲେ । ତାଙ୍କର ଜ୍ୟେଷ୍ଠପୁତ୍ର ଗୌରୀଶଙ୍କର ଜଣେ ବରିଷ୍ଠ ଆଇନଜୀବି ହେବା ସାଙ୍ଗକୁ ମ୍ୟୁନିସିପାଲିଟି ଓ ଜିଲ୍ଲାବୋର୍ଡର ଚେୟାରମେନ ମଧ୍ୟ ହୋଇଥିଲେ । ରମନାରାୟଣଙ୍କ କନିଷ୍ଠ ଭାଇ ରାମଚନ୍ଦ୍ର ମିଶ୍ର ଜଣେ ବୁଦ୍ଧିବାଦୀ ବ୍ୟକ୍ତି ଥିଲେ । କଲିକତାରେ ଶିକ୍ଷାଲାଭ କରି ସେ ସିଭିଲସାର୍ଜନ ହୋଇଥିଲେ । ଉଚ୍ଚ ଅଧିକାରୀ ମାନଙ୍କ ସହ ମତାନୈକ୍ୟ ହେତୁ ସେ ଚାକିରିରୁ ଇସ୍ତଫା ଦେଇ ଘରୋଇ ଚିକିତ୍ସା କ୍ଷେତ୍ରରେ ସଫଳତା ହାସଲ କରିଥିଲେ । ରମନାରାୟଣଙ୍କ ଭଉଣୀ ଜୋଇଁ ଡ଼ାକ୍ତର ସନାତନ ପଣ୍ଡା ଉଭୟ ପାଟନା ଓ କଟକ ମେଡ଼ିକେଲ କଲେଜରେ ଶରୀରତତ୍ତ୍ୱବିତ୍ ଭାବରେ ସୁଖ୍ୟାତି ଅର୍ଜନ କରିଥିଲେ । ତାଙ୍କର ଭାଇ ତଥା ମୋର ବଡ଼ ଭଉଣୀର

ଶ୍ୱଶୁର ହିବହମ ପୂଜାରୀ ପୂର୍ବର କଲେକ୍ଟର ଭାବରେ ଅବସର ଗ୍ରହଣ କରିଥିଲେ ।

ମୁଁ ଗୁରୁପଡ଼ା ନିମ୍ନପ୍ରାଥମିକ ବିଦ୍ୟାଳୟରେ ୧୯୨୩ ରୁ ୧୯୨୬ ପର୍ଯ୍ୟନ୍ତ ଅଧ୍ୟୟନ କରିଥିଲି । ସ୍କୁଲର ହେଡ଼ମାଷ୍ଟର ଥିଲେ ଶ୍ରୀ ନାରାୟଣ ରଥ । ଅନ୍ୟ ଶିକ୍ଷକ ମାନଙ୍କ ମଧ୍ୟରେ ଥିଲେ ରଘୁମିଶ୍ର, ଦେବୀ ମିଶ୍ର, ବୈକୁଣ୍ଠ ନନ୍ଦ ଓ ପରମେଶ୍ୱର ଧର । ମୋର ସହପାଠୀ ଥିଲେ ନାରାୟଣ ମାଝୀ, ପୂର୍ଣ୍ଣଚନ୍ଦ୍ର ପାଢ଼ୀ, ପର୍ଶୁରାମ ଗୁରୁ, ପ୍ରସନ୍ନ ତ୍ରିପାଠୀ, ପ୍ରସନ୍ନ ନନ୍ଦ, ଲଳିତ ମୋହନ ଷଡ଼, ମୁରଲୀ ରଥ, ଦେବାର୍ଚ୍ଚନ ମେହେର, ଜୟନାରାୟଣ ସାହୁ, ହେମନ୍ତ ବହିଦାର, ପରମେଶ୍ୱର ବହିଦାର, କାମଳା ପଟ୍ଟନାୟକ, ବଂଶୀବଟ ପୂଜାରୀ, ଗଙ୍ଗାଧର ମିଶ୍ର (କମ୍ପୋଜିଟର) । ମୋର ଦୁର୍ଭାଗ୍ୟ ଯେ, ସମସ୍ତଙ୍କୁ ଛାଡ଼ଦେଇ ସମସ୍ତେ ପରଲୋକ ଗମନ କରିଛନ୍ତି । ମୋର ଉପର ଶ୍ରେଣୀରେ ଥିଲେ ତାରା ପ୍ରସାଦ ମିଶ୍ର, ସତ୍ୟ ଗୋପାଳ ନାୟକ, ଶ୍ରଦ୍ଧାକର ସୂପକାର, ଶଶୀ ଭୂଷଣ ପଣ୍ଡା, ରଜାରାମ ଦୁବେ ଓ ଜଗଦୀଶ ଷଡ଼ଙ୍ଗୀ ପ୍ରମୁଖ । ସେ ସମସ୍ତେ ଥିଲେ ସମ୍ବଲପୁର ଜିଲ୍ଲାର ରତ୍ନ । ସେମାନେ ମଧ୍ୟ ଆମକୁ ଛାଡ଼ି ଚାଲିଗଲେଣି ।

୧୯୨୬ରେ ସମ୍ବଲପୁର ଜିଲ୍ଲା ସ୍କୁଲ (ନୂତନଗୃହ)ରେ ନାମ ଲେଖେଇଲି । ସେହିବର୍ଷ ଫାଟକ ପାଖରେ (ବର୍ତ୍ତମାନର ଗଙ୍ଗାଧର ମେହେର କଲେଜ) ନୂତନ କୋଠାଘରକୁ ସ୍ଥାନାନ୍ତରିତ ହୋଇଥିଲା । ପୂର୍ବରୁ ତାହା ବର୍ତ୍ତମାନର ଲେଡ଼ି ଲୁଇସ୍ ଉଚ୍ଚ ବାଳିକା ବିଦ୍ୟାଳୟ କୋଠାରେ ଚାଲୁଥିଲା । ସେତେବେଳେ ସମ୍ବଲପୁର ଜିଲ୍ଲା ସ୍କୁଲରେ ବହୁ ପ୍ରବୀଣ ଶିକ୍ଷକ-ଥିଲେ । ପ୍ରଖ୍ୟାତ ହେଡ଼ମାଷ୍ଟର ମାନଙ୍କ ମଧ୍ୟରେ ଥିଲେ ଆନନ୍ଦଚନ୍ଦ୍ର ପଣ୍ଡା, ଚିନ୍ତାମଣି କର, ବିଶ୍ୱମ୍ଭର ମିଶ୍ର, ମହେଶ ଚନ୍ଦ୍ର ପ୍ରଧାନ, ଯଦୁବୀର ପ୍ରସାଦ ଏବଂ ଅକ୍ଷୟ କୁମାର ବାନାର୍ଜୀ । ସେତେବେଳର ସହକାରୀ ଶିକ୍ଷକ ମାନେ ହେଲେ ଉଭୟ ସଂସ୍କୃତ ଓ ଓଡ଼ିଆ ମାତୃଭାଷା ଶିକ୍ଷକ ବେଙ୍ଗା ପଣ୍ଡିତ, କୁଳମଣି ମିଶ୍ର, ମହେଶ୍ୱର ମିଶ୍ର, କରଣ ଚନ୍ଦ୍ର ଦେ, ଶିଶିର ଦେ, ବାଞ୍ଛାନିଧି ମିଶ୍ର, ନଟବର ସାହୁ, ଜଗନ୍ନାଥ ସାହୁ, ହରିବନ୍ଧୁ ପରିଡ଼ା, ଭଗବାନ ନନ୍ଦ, କମଳେଶ୍ୱର ନନ୍ଦ, ନାରାୟଣ ପଣ୍ଡା ଏବଂ ଗଗନ ରାୟ । ୧୯୩୩ ରେ ପ୍ରାଥମିକ ବୃତ୍ତି ପରୀକ୍ଷାରେ ମୁଁ ପ୍ରଥମ ସ୍ଥାନ ଅଧିକାର କରି ପ୍ରଥମ ପୁରସ୍କାର ପାଇଥିଲି । ଲେଖା'ର ପରିଛନ୍ନତା ପାଇଁ ମଧ୍ୟ ମୁଁ ପୁରସ୍କୃତ ହୋଇଥିଲି ।



ବୈକର୍ତ୍ତନ ପଣ୍ଡା, ଗଣେଷପୁର, ସୋନପୁର ଜିଲ୍ଲା
ପ୍ରଥମ ସ୍ତ୍ରୀ
ସୋମନାଥ ବାବୁ
ଦ୍ୱିତୀୟ ସ୍ତ୍ରୀ
ମଦନମୋହନ
କନ୍ୟା
ଗୋକୁଳ
କନ୍ୟା
ଅର୍ଣ୍ଣପୂର୍ଣ୍ଣା
ବନମାଳୀ
ପ୍ରଫୁଲ୍ଲ
(ମୃତ)
ପ୍ରସନ୍ନୀ
(ମୃତ)
ତ୍ରୟ ପୁତ୍ର
ବ୍ରଜମୋହନ
ଶିବନାରାୟଣ
କିଶୋର
ଲକ୍ଷ୍ମୀନାରାୟଣ
ଶ୍ୟାମସୁନ୍ଦର
ବଂଶୀଧର
ଧରଣୀଧର ମିଶ୍ର
ରାମନାରାୟଣ
ମଦନ
ତ୍ରିଲୋକ୍ୟ
ଡ଼ା: ରାମଚନ୍ଦ୍ର
ଭାଗିରଥୀ
ଉତ୍କଳ ଓ
ସହସମ୍ପାଦକ
ଷ୍ଟେଟ୍ସମେନ୍
କଲିକତା,
ଦଶରଥ
ଜଗନ୍ନାଥ
ସମ୍ପାଦକ,
ଉତ୍କଳସେବକ
ଡ଼ା: ପିତବାସ
ଶ୍ରୀନିବାସ
ଶ୍ରୀବଲ୍ଲଭ
ଶ୍ରୀପତି
ନୀଳନାଥ ଓ
ଅନ୍ୟମାନେ
ବନମାଳୀ ମିଶ୍ର,
ବାସୁଦେବ
ଦୁର୍ଗାପ୍ରସାଦ
ଦେବୀପ୍ରସାଦ,
ଶ୍ରୀମତୀ ସରୋଜ କୁମାରୀ (କନ୍ୟା) ବନମାଳୀ ବାବୁଙ୍କ ସହ ବିବାହିତ,

୧୯୨୮ରେ ଗାନ୍ଧିଜୀ ସମ୍ବଲପୁର ଆସିଥିଲେ । ସେଥିପାଇଁ ଚନ୍ଦ୍ରଶେଖର ବେହେରଙ୍କ ଅଧ୍ୟକ୍ଷତାରେ ଏକ ଅଭ୍ୟର୍ଥନା ସମିତି ଗଠିତ ହୋଇଥିଲା । ମୋର ପିତା ଏହି ସମିତିର ସମ୍ପାଦକ ଥିଲେ । ସେତେବେଳେ ସେ ଜିଲ୍ଲା ବୋର୍ଡର ଚେୟାରମେନ୍ ଥିଲେ । ସମ୍ବଲପୁର ବ୍ରହ୍ମପୁର ଘାଟରେ କାଠ ଓ ବାଉଁଶର ଗୋଟିଏ ପୋଲ ନିର୍ମାଣ କରାଯାଇଥିଲା । ମହାତ୍ମା ଗାନ୍ଧି ସୁବିଧାରେ ଯାଇପାରିବେ ବୋଲି ବଡ଼ସଡ଼କରୁ ନଦୀଶଯ୍ୟାକୁ ଏକ ମୋରମ ରାସ୍ତା ମଧ୍ୟ ତିଆରି କରାଯାଇଥିଲା । ମହାନଦୀର ବାଲୁକାଶଯ୍ୟା ଉପରେ ଏକ ବିରାଟ ସଭାର ଆୟୋଜନ ହୋଇଥିଲା । ଏହି ସଭାରେ ସହରର ପ୍ରାୟ ସମସ୍ତ ସରକାରୀ ଓ ବେସରକାରୀ ଲୋକ ଯୋଗ ଦେଇଥିଲେ । ମହାତ୍ମାଜୀ ଚନ୍ଦ୍ରଶେଖର ବେହେରାଙ୍କ ଘରେ ଅବସ୍ଥାନ କରୁଥାନ୍ତି । ମୁଁ ମଧ୍ୟ ପିତାଙ୍କ ସଙ୍ଗେ ଅନେକଥର ଗାନ୍ଧିଜୀଙ୍କ ପାଖକୁ ଯିବାର ସୁଯୋଗ ପାଇଥିଲି । ବହୁ ସଂଖ୍ୟକ କଂଗ୍ରେସୀ ଲୋକ ଗାନ୍ଧିଜୀଙ୍କ ସେବାସତ୍କାର କରୁଥାଆନ୍ତି । ମହାତ୍ମା ମୋତେ ଆଦରରେ ତାଙ୍କ ପାଖରେ ବସିବାକୁ କହୁଥିଲେ । ଗାନ୍ଧିଜୀଙ୍କ ପ୍ରତି ସେହି ସ୍ୱତଃ ପ୍ରବୃତ୍ତ ଅଭ୍ୟର୍ଥନା ସାଧାରଣ ସଭାର ସେହି ଜନଗହଳି ଗାନ୍ଧିଜୀଙ୍କ ସେହି ପ୍ରେରଣାଦାୟୀ ବ୍ୟକ୍ତିତ୍ୱ ସାଙ୍ଗକୁ ଓଜସ୍ୱିନୀ ଭାଷଣ କେବେ ଭୁଲିହେବ ନାହିଁ ।

୧୯୩୪ରେ କୁଳବୃଦ୍ଧ ମଧୁସୂଦନ ଦାଶଙ୍କ ତିରୋଧାନ ହେଲା । ସେହିଦିନ ସହରର ଭିକ୍ଟୋରିଆ ହଲଠାରେ ଏକ ଶୋକସଭାର ଆୟୋଜନ ହୋଇଥିଲା । ଡେପୁଟି କମିଶ୍ନର ଜନ୍‌ସନ୍ ନୋଟେଟ୍ ଆଇ.ସି.ଏସ୍‌ଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ଏହି ଶୋକ ସଭାରେ ମୁଖ୍ୟବକ୍ତା ଥାଆନ୍ତି ଚନ୍ଦ୍ରଶେଖର ବେହେରା । ସେମାନେ ଭାଷଣ ଦେଲାବେଳେ କୋହ ସମ୍ଭାଳି ନପାରି କାନ୍ଦି ପକାଇଥିଲେ । ଏବଂ ଉପସ୍ଥିତ ଜନତାଙ୍କ ଆଖି ମଧ୍ୟ ଛଳଛଳ ହୋଇ ଯାଇଥିଲା । ମୁଁ ମଧ୍ୟ ସେ ସଭାକୁ ଯାଇଥିଲି । ମୁଁ ସେ ଦିନର ଦୃଶ୍ୟ ଭୁଲି ପାରିବି ନାହିଁ । ତାହାଥିଲା ମୋ ପାଇଁ ଓଡ଼ିଶାର ଐକ୍ୟର ପ୍ରତୀକ ।

ଫ୍ରେଜର କ୍ଲବ, ଭିକ୍ଟୋରିଆ ଟାଉନ୍‌ହାର ଏବଂ ବ୍ରଜମୋହନ ପାଠାଗାର ସମ୍ବଲପୁରର ଓଡ଼ିଆ ବୁଦ୍ଧିଜୀବୀମାନଙ୍କର ମିଳନ ସ୍ଥଳୀ ଥିଲା । ଡାକ୍ତର ଜନାର୍ଦ୍ଦନ ପୂଜାରୀ ସହରର ଜଣେ ସମ୍ମାନୀୟ ବ୍ୟକ୍ତି ଥିଲେ । ପୀଡ଼ିତମାନଙ୍କୁ ମାଗଣାରେ ଚିକିତ୍ସା କରିବା ବ୍ୟତୀତ ସେ ସମାଜସେବା କାର୍ଯ୍ୟରେ

ମଧ୍ୟ ନଗରକୁ ନିୟୋଜିତ କରୁଥିଲେ । ସେ ସମ୍ବଲପୁର ସହରରେ ଯେତେବେଳେ ପାନୀୟ ଜଳର ଉତ୍କଟ ଅଭାବ ପଡ଼ିଥିଲା କେତେଜଣ ଉତ୍ସର୍ଗୀକୃତ ସ୍ୱେଚ୍ଛା ସେବକଙ୍କୁ ନେଇ ମହାନଦୀର ବଡ଼ଧାରରୁ ପାଣି ସାନଧାରକୁ ଆଣିବାରେ ସଫଳ ହୋଇଥିଲେ ।

ଶଙ୍କର ପ୍ରସାଦ ମିଶ୍ର ବ୍ୟବସାୟ ବାଣିଜ୍ୟ କ୍ଷେତ୍ରରେ ଅଗ୍ରଣୀ ଥିଲେ । ସେ ପ୍ରଥମକରି ସମ୍ବଲପୁରରୁ ମେରାମଣ୍ଡଳୀ ପର୍ଯ୍ୟନ୍ତ ଯାତ୍ରୀବାହୀ ନିତିଦିନ ବସ୍ ଚଳାଇଥିଲେ । ସେହିପରି ଶିକ୍ଷାର ପ୍ରସାର କ୍ଷେତ୍ରରେ ବ୍ରଜମୋହନ ପଣ୍ଡା ଜଣେ ନେତୃସ୍ଥାନୀୟ ବ୍ୟକ୍ତି ଥିଲେ । ସେ ସମୟଟି ଥିଲା ସମ୍ବଲପୁର ପାଇଁ ଏକ ସୁବର୍ଣ୍ଣ ଯୁଗ, ଯେତେବେଳେ ଅନେକ ସଂଖ୍ୟକ ଧୀସମ୍ପନ୍ନ ବୁଦ୍ଧିଜୀବୀଙ୍କ ଆବିର୍ଭାବ ଘଟିଥିଲା ।

ସେତେବେଳେ ସମ୍ବଲପୁରର ଜନସଂଖ୍ୟା ଥିଲା ପଚିଶ ହଜାରରୁ ତିରିଶ ହଜାର ମଧ୍ୟରେ । ମ୍ୟୁନିସିପାଲିଟି ଇଂରେଜ ପ୍ରଶାସକଙ୍କ ଅଧୀନରେ ସହର ପରିଷ୍କାର ପରିଚ୍ଛନ୍ନ ଥିଲା । ଅଧିକାଂଶ ଉଚ୍ଚଶିକ୍ଷିତ ଓ ସମୃଦ୍ଧ ବ୍ୟକ୍ତି ଝାଡ଼ୁଆପଡ଼ାରେ, ବଡ଼ସଡ଼କର ଜୟନାରାୟଣ ପାଣିଗ୍ରାହୀଙ୍କ ଘରଠାରୁ ହୋତାପଡ଼ା ମନ୍ଦିର ଭିତରେ ବସବାସ କରୁଥିଲେ । ବର୍ତ୍ତମାନର ଗେଟି ଟାଉନ ରୋଡ଼, ଅଶୋକା ଟାଉନ (ବୀର ସୁରେନ୍ଦ୍ର ସାଏ ମାର୍ଗ) ଓ ଅନ୍ୟାନ୍ୟ ସେହିପରି ଅଞ୍ଚଳ ଆଜିଯାହା ସବୁଠାରୁ ମହାର୍ଘସ୍ଥାନ ସେସବୁ ଅଞ୍ଚଳ ସେତେବେଳେ ନାଲିବଟୀ (ନିଷିଦ୍ଧ ଅଞ୍ଚଳ) ଅଞ୍ଚଳ ଭାବରେ ପରିଚିତ ଥିଲା । ମହାନଦୀର ଚେଣ୍ଟନ ବ୍ରିଜଠାରୁ ମ୍ୟୁନିସିପାଲିଟି କୋଠା ପର୍ଯ୍ୟନ୍ତ ସାନସଡ଼କ ଓ ବଡ଼ ସଡ଼କ ସମ୍ବଲପୁରର ପୁରାତନ ପ୍ରତିଷ୍ଠିତ ପରିବାର ଅଧ୍ୟୁଷିତ ଅଞ୍ଚଳ ଭାବରେ ପରିଚିତ ଥିଲା ।

ଅପେକ୍ଷାକୃତ ଧନୀ ଓ ସଂସ୍କୃତି ସମ୍ପନ୍ନ ପରିବାରର ଲୋକେ ବସବାସ କରୁଥିବାରୁ ସମ୍ବଲପୁର ଜିଲ୍ଲାର ପ୍ରାଣକେନ୍ଦ୍ର ଭାବରେ ସାନ ସଡ଼କ ଓ ବଡ଼ ସଡ଼କ ପ୍ରସିଦ୍ଧି ଲାଭ କରିଥିଲା ।

ପିତା ମତେ ନିଷ୍ଠା, ସତ୍ୟବାଦିତା, ଅନୁଶାସନ ଏବଂ ଶୃଙ୍ଖଳା ଶିକ୍ଷା ଦେଇଥିଲେ । ଦାୟିତ୍ୱ ପାଳନରେ କୌଣସି ପ୍ରକାର ବିଚ୍ୟୁତି ବା ସ୍ଖଳନକୁ ସେ ମୋଟେ ସହ୍ୟ କରୁନଥିଲେ । କିନ୍ତୁ ତାଙ୍କର ହୃଦୟ ଥିଲା ଅତ୍ୟନ୍ତ କୋମଳ । ମୋର ଖାଇବା ପିନ୍ଧିବା ଆଦି ସୁଖ ସୁବିଧା, ବିଶେଷ କରି ଦୁଇ ଓଳି କ୍ଷୀର ପିଇବା ଉପରେ ତୀକ୍ଷ୍ଣ ଦୃଷ୍ଟି ଦେଉଥିଲେ ।

ପିତାଙ୍କର ଏହି ତାଲିମ ପାଇଁ ମୁଁ ଅତ୍ୟନ୍ତ କୃତଜ୍ଞ । ତାହା ହୋଇନଥିଲେ ମୁଁ ମଧ୍ୟ ଅନ୍ୟ ଅନେକ ରାଜନୈତିକ ବ୍ୟକ୍ତିମାନଙ୍କ ପରି ଦୁର୍ନୀତିଗ୍ରସ୍ତ ହୋଇଯାଇଥାଆନ୍ତି । ମୋର ସ୍ମୃତି ଦଶକର ରାଜନୈତିକ ଓ ସାଧାରଣ ଜୀବନରେ ଅର୍ଥ, କ୍ଷମତା କିମ୍ବା ପ୍ରତିପତ୍ତି ମତେ ପ୍ରଭାବିତ କରିପାରିନାହିଁ । ମୋର ପିତାମହୀ ମଧ୍ୟ ଜଣେ ଜୀବନ୍ମୁକ୍ତ ଆତ୍ମା ଥିଲେ । ତାଙ୍କ ପାଖରୁ ମୁଁ ଆଧ୍ୟାତ୍ମିକତା, ନମ୍ରତା ଓ ସ୍ପଷ୍ଟବାଦିତା ଶିକ୍ଷା ପାଇଥିଲି ।

୧୯୩୭ରେ ମୁଁ ରେଭେନ୍ସା କଲେଜକୁ ଗଲି ଏବଂ ୧୯୪୧ ପର୍ଯ୍ୟନ୍ତ ପଢିଲି । ଅଧିକାଂଶ ଅଧ୍ୟାପକ ବିଦେଶରୁ ଶିକ୍ଷିତ ହୋଇ ଫେରିଥିଲେ ଏବଂ ନିଜ ନିଜ ବିଷୟରେ ଅଧ୍ୟାପନାରେ ସୁଖ୍ୟାତି ଅର୍ଜନ କରିପାରିଥିଲେ । ମୋର ଅଧ୍ୟାପକ ଥିଲେ ପ୍ରିୟନାଥ ଦେ, କାଶୀନାଥ ଦାଶ, ଅର୍ତ୍ତବଲ୍ଲଭ ମହାନ୍ତି, ଲକ୍ଷ୍ମୀକାନ୍ତ ଚୌଧୁରୀ, କିଶୋରୀ ପ୍ରସନ୍ନ ସିହ୍ନା, ଘନଶ୍ୟାମ ଦାଶ, ପରଶୁରାମ ମିଶ୍ର, ନାରାୟଣ ମିଶ୍ର, ଶ୍ୟାମାଚରଣ ତ୍ରିପାଠୀ, ଡକ୍ଟର ପରିଜା, ଏଚ୍.ଆର୍. ବାଥେଜା, ମୋହିନୀମୋହନ ସେନାପତି, ନିୟୋଗୀ, କୃପାନାଥ ମିଶ୍ର, ହରିହର ମହାପାତ୍ର ରାୟ, ଗିରିଜା ଦେ, ବଳଭଦ୍ର ପ୍ରସାଦ ପ୍ରମୁଖ । ସେହିପରି ମୋର ଆଇନ ଅଧ୍ୟାପକଙ୍କ ମଧ୍ୟରେ ପ୍ରସିଦ୍ଧ ଥିଲେ ଜଷ୍ଟିସ ହରିହର ମହାପାତ୍ର, ଭଟ୍ଟାଚାର୍ଯ୍ୟ ଓ ବେନର୍ଜୀ । ମୁଁ ଡବ୍ଲ୍ୟୁ ପ୍ରିଲିମିନେରୀ ଓ ଫାଇନେଲ "ଲ" ପରୀକ୍ଷାରେ ପ୍ରଥମ ଶ୍ରେଣୀରେ ପ୍ରଥମ ସ୍ଥାନ ଅଧିକାର କରିଥିଲି । ପରୀକ୍ଷା ଖାତାରେ ମୋର ଉତ୍ତର ପରୀକ୍ଷକ ମାନଙ୍କୁ ଏପରି ସନ୍ତୁଷ୍ଟ କରିପାରିଥିଲା ଯେ ସେମାନେ ମୋତେ ପ୍ରତ୍ୟେକ ବିଷୟରେ ଶତକଡ଼ା ନବେ ନମ୍ବର ଦେବାକୁ ମଧ୍ୟ କୁଣ୍ଠାବୋଧ କରିନଥିଲେ । ମୋର କେତେଜଣ କଲେଜ ସାଥୀସହପାଠୀ ହେଲେ ବି ବି ମହାନ୍ତି ଆଇ.ସି.ଏସ, ଆର୍ କେ. ପାଢ଼ୀ ଆ.ପି. ଏସ୍, ଦାମୋଦର ପ୍ରେମରାଜ୍ୟ ଆ.ଇ.ପି.ଏସ୍, ପ୍ୟାରୀ ମୋହନ ସାମନ୍ତରାୟ ଆଇ.ଏ.ଏସ୍, ଗୋପାଳ ଦାଶ ଆଇ.ଏ.ଏସ, ଶ୍ରୀ ପାଳିତ ଆଇ.ପି ଏସ୍, ଜଷ୍ଟିସ ସଚ୍ଚିଦାନନ୍ଦ ଆଚାର୍ଯ୍ୟ, ବୀରେନ ମିତ୍ର (ମୁଖ୍ୟମନ୍ତ୍ରୀ) ଯାଙ୍କୁ ବିମ୍ବାଧର ପଣ୍ଡା, ଲଳିତ ପତି, ବିନୋଦ ନାୟକ, ରାମସ୍ୱାମୀ ସେନାପତି, ଭୁବନେଶ୍ୱର ବେହେରା, ପୂର୍ଣ୍ଣଚନ୍ଦ୍ର ମିଶ୍ର ଏବଂ ବିନୋଦ ନନ୍ଦ ପ୍ରମୁଖ ।

ମୋର ଘନିଷ୍ଠ ବନ୍ଧୁମାନଙ୍କ ଭିତରେ ଥିଲେ ମୁରଲୀଧର ପୂଜାରୀ, ଜଣେ ଅସାମାନ୍ୟ ଭଦ୍ରଲୋକ । ଶିଶୁପରି ସରଳ ତାଙ୍କର ହୃଦୟ । ତାଙ୍କ ମନରେ କାହାରି ପ୍ରତି ବିଦ୍ୱେଷ ନ ଥିଲା । ଅକୋଡିଏ ବର୍ଷ ତଳେ ତାଙ୍କର

ବିୟୋଗ ପର୍ଯ୍ୟନ୍ତ ସେ ମୋର ପ୍ରିୟତମ ବନ୍ଧୁ ହୋଇ ରହିଥିଲେ । ସେ ଖାଲିର ଜନାର୍ଦ୍ଦନ ପୂଜାରୀଙ୍କ ଭାଇ ପ୍ରସନ୍ନ କୁମାର ପୂଜାରୀଙ୍କ ପୁଅଥିଲେ । ବନ୍ଧୁ ମୁରଲୀ ପୂଜାରୀର ମଧୁର ସ୍ମୃତି ସଦା ସତେଜ ହୋଇ ରହିଛି ।

ମୁଁ ଇଷ୍ଟ ହଷ୍ଟେଲରେ ରହୁଥିଲି । ଆମେ ପଶ୍ଚିମ ଓଡ଼ିଶା, ସିଂହଭୂମ, ଖଡ଼େଇକେଲା ଏବଂ ଗଞ୍ଜାମର ଛାତ୍ରମାନେ ଓଡ଼ିଶାର ସାଂସ୍କୃତିକ ରାଜଧାନୀ କଟକକୁ ବହୁତ ସମ୍ମାନ କରୁଥିଲୁଁ । କଟକର ସମସ୍ତ ବିଶିଷ୍ଟ ଲୋକଙ୍କ ଘରକୁ ଯାଇ ବ୍ୟକ୍ତିଗତ ଭାବରେ ଆମର ସମ୍ମାନ ଜଣାଉଥିଲୁଁ । ଆମେ ବାରବାଟି, ଶୈଳଦ୍ୱାରସ୍ଥିତ ଲକ୍ଷ୍ମୀନାରାୟଣ ସାହୁଙ୍କ ବାସଭବନ, ମଧୁସୂଦନ ଦାସଙ୍କ ପରିତ୍ୟକ୍ତ ଉତ୍କଳ ଟେନେରୀ, ଉତ୍କଳମଣିଙ୍କ ସତ୍ୟବାଦୀ ପ୍ରେସ, ଭିକାରୀ ଚରଣ ପଟ୍ଟନାୟକ, ଗୋପାଳ ଚନ୍ଦ୍ର ପ୍ରହରାଜ, ବ୍ରଜସୁନ୍ଦର ଦାସ ଏବଂ ତାଙ୍କର ମୁକୁର ପ୍ରେସ ଓ ବିଶ୍ୱନାଥ କର ପ୍ରମୁଖଙ୍କ ଘରକୁ ଯାଇ ଓଡ଼ିଶାର ଏହି ବରପୁତ୍ର ମାନଙ୍କ ମହାନତା ସ୍ମରଣ କରିବା ବେଳେ ଆମର ଆଖି ଓଦା ହୋଇଯାଉଥିଲା ।

ଓଡ଼ିଶାର ପ୍ରାଚୀନ ଗୌରବ, କଳା, ସ୍ଥାପତ୍ୟ, ସାଧବପୁଅର ଦରିଆପାରିକୁ ଯାଇ ବାଣିଜ୍ୟକରି ଉପନିବେଶ ସ୍ଥାପନ, ଦକ୍ଷିଣ ଏସିଆରେ ଆଜିବି ଯେଉଁଠି ଓଡ଼ିଆ ଭାଷାର ସତ୍ତା ବିଦ୍ୟମାନ ସେ ସବୁ ଆମର ଯୁବକ ମାନଙ୍କୁ ଆକର୍ଷିତ କରୁଥିଲା । ବନ୍ୟା ସମୟରେ ଡ଼କ୍ଟର ପର୍ଶୁରାମ ମିଶ୍ରଙ୍କ ନେତୃତ୍ୱରେ କଟକ ଜିଲ୍ଲାର ବନ୍ୟାଂଚଳକୁ ଡ଼ଙ୍ଗାରେ ଯାଇ ରିଲିଫ କାର୍ଯ୍ୟରେ ଲାଗିଯାଉଥିଲୁ । ବର୍ଷ ବର୍ଷ ଧରି ଏହି କଠିନ କାର୍ଯ୍ୟକରି ଆମେ ଓଡ଼ିଶା ସରକାରଙ୍କ ପାଖରୁ ପୁରସ୍କୃତ ମଧ୍ୟ ହେଉଥିଲୁ ।

୧୯୩୬ରେ ରେଭେନ୍‌ସା କଲେଜ ତା'ର ରୌପ୍ୟ ଜୟନ୍ତୀ ପାଳନ କଲା । ବହୁ ସରକାରୀ, ବେସରକାରୀ ବ୍ୟକ୍ତିଙ୍କ ବ୍ୟତୀତ ଅନେକ ପୁରାତନ ଛାତ୍ର ମଧ୍ୟ ଏହି ଉତ୍ସବରେ ଯୋଗ ଦେଇଥିଲେ । ମୁଖ୍ୟଅତିଥି ଭାବରେ ଯୋଗଦେଇଥିଲେ ପାଟନା ହାଇକୋର୍ଟର ମୁଖ୍ୟ ବିଚାରପତି ଶ୍ରୀ କୁର୍ଟନି ଟେରେଲ୍ । କଲେଜ ଗେଟରେ ରେଭେନସା ସାହେବଙ୍କ ମୂର୍ତ୍ତି ପ୍ରତିଷ୍ଠା କରାଯାଇଥିଲା । ସମସ୍ତ କୋଠାକୁ ସଜ୍ଜିତ କରାଯାଇଥିଲା । ସେ ଦୃଶ୍ୟ ଆକର୍ଷଣୀୟ ହୋଇଥିଲା । କଲେଜର ଛାତ୍ର ଭାବରେ ଆମେ ମାନେ ଏବେ ମଧ୍ୟ ଗର୍ବ ଅନୁଭବ କରୁଅଛୁ । ପଣ୍ଡିତ ଜବାହାରଲାଲ ନେହେରୁ ଯେତେବେଳେ କଟକ ଆସିଥିଲେ, କଲେଜ କର୍ତ୍ତୃପକ୍ଷ ଏବଂ ସରକାରଙ୍କ ବାରଣ ନିର୍ଦ୍ଦେଶ

ସତ୍ତ୍ୱେ କଲେଜ ଛାତ୍ରମାନେ କ୍ଲାସ ଛାଡ଼ି ଦୁଇ ଧାଡ଼ିରେ ଭୁଲିଯାଇଥିବାରେ ଭୁଲମାଘୁର ବାଲୟାତ୍ରା ପଡ଼ିଆକୁ ଯାଇଥିଲେ । ସେଇଁଠାରେ କି ଏକ ସଭାର ଆୟୋ-ଜନ କରାଯାଇଥିଲା । ବ୍ରିଟିଶ ସରକାରଙ୍କ ସବୁପ୍ରକାର ବାଧା ଓ କଡ଼ା ପୁଲିସ ବନ୍ଦୋବସ୍ତ ସତ୍ତ୍ୱେ ପଣ୍ଡିତ ନେହେରୁଙ୍କ ସଭାରେ ବହୁ ଜନସମାଗମ ହୋଇଥିଲା । ସେଦିନ ପଣ୍ଡିତଜୀ ଭାଷଣ ଶେଷ କରିବାକୁ ଯାଇ ଯୁବ ସମ୍ପ୍ରଦାୟ ଉଦ୍ଦେଶ୍ୟରେ ଯେଉଁ କଥା କହିଥିଲେ; "ଯେତେ ପ୍ରତିବନ୍ଧକ ଆସୁସତ୍ତେ ବିଭ୍ରାନ୍ତ ହୁଅନାହିଁ । (Whatever may befall, donot falter")

ଏପ୍ରିଲ ପହିଲା ୧୯୩୭ ରେ ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ରୂପେ ଉଦ୍‌ଘାଟିତ ହେଲା । ପୂର୍ବ ଛାତ୍ରାବାସ ସନ୍ନିକଟବର୍ତ୍ତି ରେଭେନସା କଲେଜ ହଲରେ ଓଡ଼ିଶା ବିଧାନସଭା ବସିଲା । ଆମେ ପ୍ରାୟ ପ୍ରତିଦିନ ସଭ୍ୟମାନଙ୍କୁ ଭେଟୁଥିଲୁଁ । ଏହି ସଭ୍ୟମାନେ ପ୍ରତ୍ୟେକେ ନିଜନିଜ କ୍ଷେତ୍ରରେ ମହାନ ଥିଲେ ।

---

୧୯୩୭ ରେ ଶ୍ରୀ ବିଶ୍ୱନାଥ ଦାଶଙ୍କ ନେତୃତ୍ୱରେ ତିନିଜଣିଆ ମନ୍ତ୍ରୀ-ମଣ୍ଡଳ ଗଠିତ ହେଲା । ଶ୍ରୀ ବୋଧରାମ ଦୁବେ ଏବଂ ଶ୍ରୀ ନିତ୍ୟାନନ୍ଦ କାନୁନ୍‌ଗୋ ମନ୍ତ୍ରୀ ହେଲେ । ପାର୍ଲିଆମେଣ୍ଟାରୀ ସେକ୍ରେଟେରୀ ହୋଇଥିଲେ ଦ୍ୟାଘା ଶଙ୍କର ରାୟ, ରାଜକୃଷ୍ଣ ବୋଷ, ରାଧାକୃଷ୍ଣ ବିଶ୍ୱାସରାୟ ଏବଂ ଯଦୁମଣି ମଙ୍ଗରାଜ । ସମ୍ବଲପୁରର ବିଧାନସଭା ସଭ୍ୟ ଥାଆନ୍ତି ପ୍ରହଲ୍ଲାଦ ରାୟ ଲାଠ, ଘଙ୍କାର ବେହେରା ଓ ବଣି ବେଭାର । ଓଡ଼ିଶାର ଗାନ୍ଧି ମୁକୁନ୍ଦ ପ୍ରସାଦ ଦାଶ ଆଣ୍ଠୁ ଲୁଚୁନଥିବା ଲୁଗା ଖଣ୍ଡେ ପିନ୍ଧୁଥିଲେ । ସେ ବାଚସ୍ପତି ନିର୍ବାଚିତ ହୋଇଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ର, ଦିବାକର ପଟ୍ଟନାୟକ ପ୍ରମୁଖ ସର୍ବିଧି ସଭ୍ୟ ଥିଲେ । ସେମାନେ ବାରମ୍ବାର ଦୃଷ୍ଟି ଆକର୍ଷଣକାରୀ ନୋଟିସ ଦେଉଥିଲେ । କେରଳର ବାଣସ୍ଥର, ବାଣସ୍ଥର ଗୋବିନ୍ଦ ନାୟାର ଓଡ଼ିଶା ବିଧାନସଭାର ପ୍ରଥମ ସଚିବ ଥିଲେ ।

୧୯୩୬ ରେ ମୁଁ ଧର୍ମ ଓ ସମ୍ଭ୍ରାନ୍ତ ଶ୍ରୀ ଦୁର୍ଗା ପ୍ରସାଦ ମିଶ୍ରଙ୍କ ସୁନ୍ଦରୀ କନ୍ୟା ସରୋଜ କୁମାରୀଙ୍କୁ ବିବାହକଲି । ଶ୍ରୀ ମିଶ୍ର ସେତେବେଳେ ବିହାର ଓ ଓଡ଼ିଶାର ଅବକାଶ ଡ଼େପୁଟି କମିଶନର ଥିଲେ । ସେ ଜଣେ ବିଜ୍ଞ ବ୍ୟକ୍ତିଥିଲେ ଏବଂ ଲାଟିନ, ଇଂରାଜୀ, ହିନ୍ଦି ଓ ବଙ୍ଗଳା ଭାଷାରେ ତାଙ୍କର ଅଗାଧ ପାଣ୍ଡିତ୍ୟ ଥିଲା । ତାଙ୍କର ପିତା ଓ ପିତାମହ ପୂର୍ବତନ ଗଡ଼ଜାତ

ମାନଙ୍କର ଦେଓ୍ୱାନ ଥିଲେ । ବ୍ରିଟିଶ ସରକାରଙ୍କ ଅମଳରେ ସେମାନଙ୍କ ପରିବାରର ଅନେକେ ଉଚ୍ଚପଦବୀରେ ନିଯୁକ୍ତ ହୋଇଥିଲେ ।

କଟକରେ ସମ୍ବଲପୁରୀ ଏସୋସିଏସନ ଥିଲା । ପଶ୍ଚିମ ଓଡ଼ିଶା ଏବଂ ସିଂହଭୂମ ଜିଲ୍ଲାର ଛାତ୍ରଛାତ୍ରୀ ଏହାର ସଭ୍ୟ ଥିଲେ । ମୁଁ କିଛିଦିନ ପାଇଁ ଏହାର ସମ୍ପାଦକ ଥିଲି । ଏହି ସଂଘ ତରଫରୁ ପଶ୍ଚିମ ଓଡ଼ିଶାର ପର୍ବ-ପର୍ବାଣୀ, ବିଶେଷ କରି ନୂଆଁଖାଇ ବଣଭୋଜି ପିକ୍‌ନିକ୍ ସ୍ଥଳମାନଙ୍କରେ ପାଳିତ ହେଉଥିଲା । କଟକ ପୁରୀରେ ବସବାସ କରୁଥିବା ପଶ୍ଚିମ ଓଡ଼ିଶା-ବାସୀଙ୍କ ଏକତ୍ରିତ ହେବାପାଇଁ ଏହା ଏକ ଅବସର ଥିଲା ।

କଲେଜରୁ ଫେରି ମୁଁ ଓକିଲାତି ଆରମ୍ଭ କଲି । ନୂଆଁ ଓକିଲାତି ଆରମ୍ଭ କରୁଥିବା ଓକିଲମାନଙ୍କ ପାଇଁ ତାହା ଥିଲା ଦୁର୍ଦ୍ଦିନର ସମୟ । କିନ୍ତୁ, ମୁଁ ବିଶିଷ୍ଟ ଓକିଲ ପରିବାରର ସନ୍ତାନ ହୋଇଥିବାରୁ କିଛି ଟଙ୍କା ଆୟ କରିବା ମୋ ପାଇଁ କଷ୍ଟକର ହୋଇ ନ ଥିଲା । ୧୯୪୭ ଓ ତାପରେ ମୋର ଆୟ ଅନେକ ପରିମାଣରେ ବଢ଼ିଯାଇଥିଲା । ମୋ ପକ୍ଷରେ ଓକିଲାତି ଲାଭଜନକ ହୋଇଥିଲେ ମଧ୍ୟ ସାଧାରଣ ଜୀବନରେ ପ୍ରବେଶ କରିବା ଲାଗି ମୋ ଉପରେ ଚାପ ପ୍ରୟୋଗ କରାଯାଇଥିଲା । ରାଜନୀତିକୁ ମତେ ଆଣିବାକୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ହରେକୃଷ୍ଣ ମହତାବଙ୍କ ଭୂମିକା ରହିଥିଲା ।

ପ୍ରାୟ ୧୯୫୦ ମସିହା ବେଳକୁ ମୁଁ ସାଧାରଣ ଜୀବନରେ ପ୍ରବେଶ କଲି । ସେତେବେଳର ମୂଲ୍ୟବୋଧଗୁଡ଼ିକ ରାଜନୀତି ମତେ ସାଧାରଣ ମଣିଷର ଦୁଃଖ ଦାରିଦ୍ର୍ୟ ଦୂର କରିବାରେ ସାହାଯ୍ୟ କରିବାକୁ ବିନମ୍ର ଓ ସହାନୁଭୂତିଶୀଳ ହେବାଲାଗି ପ୍ରେରଣା ଦେଇଥିଲା । ପଶ୍ଚିମ ଓଡ଼ିଶାର ଲୋକଙ୍କ ଏକ ବିଶେଷତ୍ୱ ହେଲା ଦାରିଦ୍ର୍ୟ ସତ୍ତ୍ୱେ ସେମାନେ ସନ୍ତୁଷ୍ଟ, ନିଷ୍ଠାପର, ଧାର୍ମିକ ଏବଂ ଅତିଥିପରାୟଣ ହୋଇ ରହିବା ।

୧୯୪୫ ମସିହାରେ ହୀରାକୁଦ ବନ୍ଧ ନିର୍ମାଣର ସରକାରୀ ଘୋଷଣା କରାଗଲା । ସମ୍ବଲପୁର ଜିଲ୍ଲାର ପ୍ରାୟ ଶହଶହ ଗାଁ ଜଳ-ମଗ୍ନ ହେବ । ହଜାର ହଜାର ଗ୍ରାମବାସୀ ନିଜର ଭିଟାମାଟି ଛାଡ଼ି ବିସ୍ଥାପିତ ହେବା ଆଶଙ୍କା କରି ପ୍ରସ୍ତାବିତ ବନ୍ଧ ଯୋଜନା ବିରୁଦ୍ଧରେ ଏକ ଜନଆନ୍ଦୋଳନ ତେଜି ଉଠିଲା । ଆନ୍ଦୋଳନକାରୀମାନଙ୍କ ଦ୍ୱାରା ଗଠିତ କାର୍ଯ୍ୟକାରୀ ସମିତିର ମୁଁ ଜଣେ ସଭ୍ୟ ଥିଲି । କମିଟିର ପ୍ରତ୍ୟେକ ସଭ୍ୟଙ୍କୁ

କେତେ ଗୁଡ଼ାଏ ଗାଁକୁ ଯାଇ ବନ୍ଧ ଯୋଜନାର ଉପୁଜିବା ପରିଣତି ସମ୍ପର୍କରେ ଗ୍ରାମବାସୀଙ୍କୁ ସଚେତନ କରିବାର ଦାୟିତ୍ୱ ଦିଆଗଲା । ୧୯୪୭ରୁ ୧୯୪୮ ମସିହା ମଧ୍ୟରେ ବନ୍ଧ ଯୋଜନା ପାଇଁ ଜମି ଦଖଲ କରିବା ପାଇଁ ସରକାରୀ ନୋଟିସ ଜାରି କରାଗଲା । ଏହି ନୋଟିସ ପାଇବା ମାତ୍ରେ ଲୋକେ ଲୋକେ ଉତକ୍ଷିପ୍ତ ହୋଇ ଉଠିଲେ ଏବଂ ଯୋଜନା ବିରୁଦ୍ଧରେ ସଂଗ୍ରସମିତ ହେବାକୁ ଲାଗିଲା ।

ଓଡ଼ିଶାର ରାଜ୍ୟପାଳ ଶ୍ରୀ ଚନ୍ଦୁଲାଲ ତ୍ରିବେଦୀ ଯେଉଁଦିନ ସମ୍ବଲପୁର ଗସ୍ତରେ ଆସି ସର୍କିଟ ହାଉସରେ ଅବସ୍ଥାନ କରୁଥାଆନ୍ତି ସେହିଦିନ ଏକ ଅଭୂତପୂର୍ବ ଶାନ୍ତିପୂର୍ଣ୍ଣ ସମାବେଶର ଆୟୋଜନ ହେଲା । ସରକାର ଏହି ଆନ୍ଦୋଳନକାରୀଙ୍କୁ ଦୃଢ଼ ହସ୍ତରେ ଦମନ କରିବାକୁ ଯାଇ ଲାଠିଗୁଳିମାଡ଼ ଆଦି ହିଂସ୍ର ଆଚରଣ କରିବା ସଙ୍ଗେ ସଙ୍ଗେ ବହୁସଂଖ୍ୟକ ଲୋକଙ୍କୁ ଗିରଫ କରି ଜେଲକୁ ପଠାଇ ଦେଲେ । ଏହି ସମାବେଶରେ ନେତୃତ୍ୱ ନେଇଥିବା ଋଷିପ୍ରତିମ ଡାକ୍ତର ଜନାର୍ଦ୍ଦନ ପୂଜାରୀ ଏବଂ ତାଙ୍କର ସହଧର୍ମିଣୀ ଗିରଫ ହୋଇ ପ୍ରାୟ ଛଅମାସ ଜେଲରେ ରହିଥିଲେ ।

କାର୍ଯ୍ୟକାରୀ କମିଟିର କେତେଜଣ ସଭ୍ୟଙ୍କ ବିଶ୍ୱାସ ଘାତକତା ହେତୁ ଆନ୍ଦୋଳନ ବିଫଳ ହୋଇଗଲା । ସରକାରୀ ଏଡ଼ଭୋକେଟ, କଣ୍ଟ୍ରାକ୍ଟ ଆଦି ସ୍ୱାର୍ଥସମ୍ପନ୍ନ ପଦବୀ ପୁରସ୍କାର ଦେଇ ସରକାର ଏହି ସଭ୍ୟମାନଙ୍କୁ ବିଶ୍ୱାସଘାତ କାର୍ଯ୍ୟ ପାଇଁ ଉତ୍ସାହିତ କରିଥିଲେ ।

ଜେଲରୁ ଖଲାସ ହେବା ପରେ ଡାକ୍ତର ଜନାର୍ଦ୍ଦନ ପୂଜାରୀ ଏବଂ ଶ୍ରୀମତୀ ପୂଜାରୀଙ୍କୁ ଏକ ଶୋଭାଯାତ୍ରାରେ ନିଆ ଯାଇଥିଲା । ମୋର ପିତା ଅତ୍ୟନ୍ତ ଅସୁସ୍ଥ ଥାଇ ମଧ୍ୟ କଳସ ଓ ଧୂପଦୀପ ନେଇ ଅଶ୍ରୁଳ ନୟନରେ ଡାକ୍ତର ପୂଜାରୀଙ୍କୁ ସମ୍ବର୍ଦ୍ଧନା ଦେଇଥିଲେ ।

ପ୍ରତିଶୋଧ ପରାୟଣ ରାଜ୍ୟସରକାର ୧୯୪୮ରେ କେନ୍ଦ୍ରସରକାରଙ୍କ କୋହଲ ଜମି ଏକ୍ୟୁଆର ଆଇନ ୧୮୯୪ର ବ୍ୟବସ୍ଥାକୁ ଉପେକ୍ଷା କରି ନୂତନ ଭୂଅର୍ଜନ ଆଇନ ପାସ କଲେ । ଏହି ନୂତନ ଆଇନ ଅନୁସାରେ ଏକର ପିଛା ଖଜଣାର ୬୫୦ ଗୁଣ ପର୍ଯ୍ୟନ୍ତ କ୍ଷତିପୂରଣ ଟଙ୍କା ଧାର୍ଯ୍ୟ ହେଲା । ସେହି ଅନୁସାରେ ଜମିର କିସମ ଅନୁଯାୟୀ କ୍ଷତିପୂରଣ ହାର ହେଲା :-

୪ର୍ଥ ଶ୍ରେଣୀ— ଟ. ୨୦-୦୦
୩ୟ ଶ୍ରେଣୀ— ଟ. ୧୦୦-୦୦
୨ୟ ଶ୍ରେଣୀ— ଟ ୨୦୦-୦୦
୧ମ ଶ୍ରେଣୀ – ଟ. ୩୦୦ ୦୦

ହାଇକୋର୍ଟ ଏବଂ ସୁପ୍ରିମ କୋର୍ଟ ଦ୍ୱାରା ଓଡ଼ିଶାର ଭୂଅର୍ଜନ ଆଇନ ଅସିଦ୍ଧ ଘୋଷିତ ହେଲା । କିନ୍ତୁ ସେତେବେଳକୁ ନେଡ଼ଗୁଡ଼ କହୁଣିକୁ ବୋହି ସାରିଥିଲା । ପ୍ରାୟ ୮୫ ଭାଗ ଲୋକଙ୍କୁ ଜୋରଜବରଦସ୍ତ କ୍ଷତିପୂରଣ ଦିଆ ସରିଥିଲା । କିନ୍ତୁ ହୀରାକୁଦ ବନ୍ଧ ପାଇଁ ଓଡ଼ିଶା ସରକାର ମଧ୍ୟପ୍ରଦେଶରୁ ଯେଉଁ ଜମି ଦଖଲ କରିଥିଲେ ସେଠାକାର ସରକାର ତାଙ୍କ ଲୋକେ ଓଡ଼ିଶା ଲୋକେ ପାଉଥିବା କ୍ଷତିପୂରଣ ହାରର ପ୍ରାୟ ଦଶଗୁଣ ଯେପରି ପାଇବେ ସେଥିପାଇଁ ବ୍ୟବସ୍ଥା କରିଥିଲେ । ଆମ ରାଜ୍ୟର ଅବସରପ୍ରାପ୍ତ ମୁଖ୍ୟ-ମନ୍ତ୍ରୀ ତଥା ମହୀଶୂର ରାଜ୍ୟର ପୂର୍ବତନ ଅର୍ଥ ଓ ଗୃହନିର୍ମାଣ ସଚିବ ତଥା ମୁଖ୍ୟମନ୍ତ୍ରୀ ଏମ୍ ଜି ରଙ୍ଗେସ୍ୱାରଙ୍କ ସତର୍କବାଣୀ ସତ୍ତ୍ୱେ ସରକାର ହୀରାକୁଦ ବନ୍ଧ କାମରେ ଆଗେଇ ଚାଲିଲେ । ଓଡ଼ିଶାର ଘଟଣାବଳୀରେ ମୁଁ ଅସହାୟ ମନେକରି କଂଗ୍ରେସ ଦଳରେ ଯୋଗଦେବାକୁ ସ୍ଥିର କଲି । କାରଣ ମୁଁ ଅନୁଭବ କଲି କଂଗ୍ରେସ ଭିତରେ ରହି ଶାନ୍ତିପୂର୍ଣ୍ଣ ଆନ୍ଦୋଳନ ଓ ଆଲୋଚନା ମାଧ୍ୟମରେ ରାଜ୍ୟସରକାରଙ୍କ ବିବେଚିତ ବ୍ୟବହାର ରୋକି ହେବ । ଲୋକଙ୍କର କ୍ଷତିପୂରଣ ହାର ବୃଦ୍ଧି କରିବା ସମ୍ଭବ ହେବ । ଏହା ପୂର୍ବରୁ ମୁଁ କୌଣସି ରାଜନୈତିକ ଦଳର ସଭ୍ୟ ନଥିଲି ।

୧୯୫୦ରେ ଡକ୍ଟର ହରେକୃଷ୍ଣ ମହତାବ ସମ୍ବଲପୁର ଆସିଲେ । ସହରର ବିଶିଷ୍ଟ ନାଗରିକମାନଙ୍କ ସହିତ ବହୁତ ଆଲୋଚନା କଲାପରେ ଆଗାମୀ ନିର୍ବାଚନରେ ସମ୍ବଲପୁର ନିର୍ବାଚନ ମଣ୍ଡଳୀରୁ ବିଧାନସଭାକୁ ପ୍ରାର୍ଥୀ ହେବା ଲାଗି ମୋ ନାମ ପ୍ରସ୍ତାବ କଲେ । ଏହି କଠିନ କାମପାଇଁ ମୁଁ ନିଜକୁ ପ୍ରସ୍ତୁତ କରିବାକୁ ଲାଗିଲି । ଜନସମ୍ପର୍କ ବଢ଼ାଇବାକୁ ଯାଇ ମୁଁ ଗ୍ରାମାଞ୍ଚଳରେ ବାସ କରୁଥିବା ଲୋକଙ୍କର ଦୁଃଖ ଦୁର୍ଦ୍ଦଶା ପ୍ରତ୍ୟକ୍ଷ ଅନୁଭବ କରିବାର ସୁଯୋଗ ପାଇଲି । ଜୀବନ ଧାରଣର ସାଧାରଣ ଆବଶ୍ୟକତାରୁ ମଧ୍ୟ ସେମାନେ ବଞ୍ଚିତ ଥିଲେ । ସାଧାରଣ ଡାକ୍ତରୀ ଚିକିତ୍ସାର ବ୍ୟବସ୍ଥା ମଧ୍ୟ ନ ଥିଲା । ଆଜି ଏ କଥା ହୁଏତ ଅବିଶ୍ୱାସ ମନେ ହୋଇପାରେ ।

୧୯୫୭-୫୮ରେ ମୁଁ ତତ୍କାଳୀନ ମ୍ୟୁନିସିପାଲିଟି ଚେୟାରମେନଙ୍କୁ ପରାସ୍ତକରି ସମ୍ବଲପୁର ମ୍ୟୁନିସିପାଲିଟିକୁ ନିର୍ବାଚିତ ହେଲି । ତତ୍କାଳୀନ ଚେୟାରମେନଙ୍କୁ ସମସ୍ତେ ଭୟ କରୁଥିଲେ । ତଥାପି କାଉନସିଲର କଂଗ୍ରେସ ସଭ୍ୟ ମାନଙ୍କ ସମେତ ପ୍ରତିକ୍ରିୟାଶୀଳ ଗୋଷ୍ଠି ଚକ୍ରାନ୍ତ କରି ମୁଁ ଚେୟାର ମେନ ନିର୍ବାଚିତ ହେବାରେ ପ୍ରତିବନ୍ଧକ ସୃଷ୍ଟି କଲେ ।

୧୯୫୭-୫୮ରେ ସ୍ୱର୍ଗତ ବିଜୁ ବାବୁଙ୍କର ମୁଖ୍ୟମନ୍ତ୍ରୀ ଥିବାବେଳେ ଅୟୁକ୍ତ ବୁର୍ଲା ଠାରେ ଏକ ଯାନ୍ତ୍ରୀକ ମହାବିଦ୍ୟାଳୟ ପ୍ରତିଷ୍ଠା କରିବା ପାଇଁ କେନ୍ଦ୍ର ସରକାରଙ୍କୁ ପରାମର୍ଶ ଦେଲେ । କେନ୍ଦ୍ର ସରକାର ଏହି ଦକ୍ଷ ପ୍ରଶାସକଙ୍କ ପ୍ରସ୍ତାବ ଗ୍ରହଣ କଲେ ।୧୯୫୬ରେ ବୁର୍ଲା ଇଞ୍ଜିନିୟରିଂ କଲେଜ ଖୋଲିଲା । ଡକ୍ଟର ପ୍ରସାଦ କଲେଜର ପ୍ରଥମ ଅଧ୍ୟକ୍ଷ ଥିଲେ । ମହାବିଦ୍ୟାଳୟ ପରି-ଚାଳନା ସମିତିର ଚେୟାରମେନ ହେଲେ ଡକ୍ଟର ପ୍ରାଣକୃଷ୍ଣ ପରିଜା । ଅନ୍ୟ ସଭ୍ୟ ମାନେ ସେମାନଙ୍କ ଖ୍ୟାତି ହେତୁ ରାଜ୍ୟ ବାହାରୁ ମନୋନୀତ ହେଲେ । ଦୀର୍ଘ ପାଞ୍ଚ ବର୍ଷ କାଳ ମୁଁ କେବଳ ଜଣେ ବେସରକାରୀ ସଭ୍ୟ ଭାବରେ ରହିଥିଲି ।

୧୯୫୬ରେ ରାଜ୍ୟ ସରକାର ମହାନଦୀରେ ଜନସାଧାରଣଙ୍କ ମାଛ ଧରିବାକୁ ନିଷିଦ୍ଧ ଘୋଷଣା କଲେ ଓ କଟକଣା ଜାରିକଲେ । କିନ୍ତୁ, ଏହି ଘୋଷଣା ନାମା ପ୍ରକାଶ କଲା ବେଳକୁ ସରକାର ୧୯୦୫ ରେ ବ୍ରିଟିଶ ସରକାର ଡେଓ୍ବାର ସେଟଲମେଣ୍ଟରେ ଲିପିବଦ୍ଧ ଘୋଷଣାନାମା ପ୍ରତି ଦୃଷ୍ଟି ଦେଇନଥିଲେ । ସେଥିରେ ସ୍ପଷ୍ଟ ଭାବରେ ମହାନଦୀରେ ଜନସାଧାରଣ ମାଗଣା ମାଛଧରା ଅଧିକାରଥିବା କଥା ଉଲ୍ଲେଖ ରହିଛି । ରାଜ୍ୟସରକାରଙ୍କ ଘୋଷଣାନାମା ପ୍ରକାଶ ପାଇବାମାତ୍ରେ ହଜାର ଧୀବର ମାନେ ଆନ୍ଦୋଳନ ଆରମ୍ଭ କରିଦେଲେ । ମୁଁ ଧୀବର ମାନଙ୍କ ନେତୃତ୍ୱନେଇ ମୁଖ୍ୟମନ୍ତ୍ରୀ ଡକ୍ଟର ହରେକୃଷ୍ଣ ମହତାବଙ୍କ ପାଖକୁ ଭୁବନେଶ୍ୱର ଗଲି । ରାଜ୍ୟ ସର-କାର ବେଆଇନ ଭାବରେ ଲାଗୁକରିଥିବା ନିଷେଧାଜ୍ଞା ବିରୁଦ୍ଧରେ ଦାବୀ ପତ୍ର ଦିଆଗଲା । ଡେଓ୍ବାର ରିପୋର୍ଟ ଦେଖିବା ମାତ୍ରେ ମୁଖ୍ୟମନ୍ତ୍ରୀ ପୂର୍ବର ନିଶୁଳ୍କ ମାଛ ଧରିବା ଅଧିକାର ଦେବାକୁ ଆଦେଶ ଜାରି କଲେ ।

୧୯୫୭ ରେ ଶ୍ରୀ ଚନ୍ଦ୍ରଶେଖରନ୍ ଆଇ.ଏ.ଏସ୍ ସମ୍ବଲପୁରର ଜିଲ୍ଲାପାଳ ଥିଲେ । ସମ୍ବଲପୁର ଟାଉନହଲ ଠାରେ ଏକ ମହିଳା ମହା-ବିଦ୍ୟାଳୟ ଖୋଲିବା ପାଇଁ ଜିଲ୍ଲାର ସ୍ତ୍ରୀଉଲକଲ ମାଲିକ ମାନଙ୍କ ପାଖରୁ

ସାତଲକ୍ଷ ଟଙ୍କାର ଚାନ୍ଦା ଆଦାୟ କରିଥିଲେ । ଏହି ଚାନ୍ଦା ସଂଗ୍ରହ ବନ୍ଧୁଙ୍କରେ ସ୍ୱଉଳକଳ ମାଲିକ ମଧ୍ୟରୁ ଏକ ପ୍ରତିନିଧି ଦଳ ମୁଖ୍ୟମନ୍ତ୍ରୀଙ୍କୁ ଭେଟି ଜିଲ୍ଲାପାଳଙ୍କ ବଦଳି ଆଦେଶ ଯୋଗାଡ଼ କଲେ । ଏକଥା ଜାଣିପାରି ଜିଲ୍ଲାପାଳ ମୋର ଝାଡ଼ୁଆପଡ଼ା ବାସଭବନକୁ ଆସି ସମସ୍ତ ବିଷୟ ଅବଗତ କରାଇଲେ । ସେହିଦିନ ରାତିରେ ମୁଁ ଯାଇ ମୁଖ୍ୟମନ୍ତ୍ରୀ ମହତାବଙ୍କୁ ଶ୍ରୀଦ୍ୱାର ଠାରେ ଦେଖାକରି ଜିଲ୍ଲାପାଳଙ୍କ ବଦଳି ଆଦେଶ ବାତିଲ କରିବାକୁ ଅନୁରୋଧ କଲି । ବଦଳି ଆଦେଶ ବାତିଲ ହୋଇଗଲା । ଏଠାରେ କହିରଖେଁ ଯେ ସେହି ମହାନ୍ ମହାବିଦ୍ୟାଳୟଟି ଏବେ ମୋତିଝରନ ଠାରେ ନିଜସ୍ୱ କୋଠାଘରେ ଚାଲୁଛି ।

୧୯୫୮ରେ ଏକ୍ଜିକ୍ୟୁଟିଭ ମାଜିଷ୍ଟ୍ରେଟ ବହିଦାର ଏବଂ ଅବସର ପ୍ରାପ୍ତ ସିଭିଲ ସର୍ଜନ ସୁବଳ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ଗୋଟିଏ କମିଟି ଗଠନ କଲୁ ସମ୍ବଲପୁର ଠାରେ ଏକ ମେଡ଼ିକାଲ ସ୍କୁଲ ସ୍ଥାପନ ପାଇଁ । ସମ୍ବଲପୁର ସହରରୁ ଅର୍ଥ ସଂଗ୍ରହ କରି ବୁର୍ଲା ପାଖରେ ଏକ ମେଡ଼ିକାଲ ସ୍କୁଲ ସ୍ଥାପନ କରାଗଲା । ଅଧ୍ୟକ୍ଷ ହେଲେ ଡାକ୍ତର ସୁବଳ ଚନ୍ଦ୍ର ଦାସ । ମୁଖ୍ୟମନ୍ତ୍ରୀ ମହତାବ ସେହିବର୍ଷ ପଶ୍ଚିମ ଓଡ଼ିଶାରେ ମେଡ଼ିକାଲ କଲେଜ ପାଇଁ କେନ୍ଦ୍ର ସରକାରଙ୍କ ମଞ୍ଜୁରି କଥା ଘୋଷଣା କଲେ । ମୁଖ୍ୟମନ୍ତ୍ରୀ ଆମ୍ଭଙ୍କୁ ଟେଲିଫୋନ କରି ମୋତେ ଏ ବିଷୟରେ ଜଣାଇଲେ, ବୋଧରାମ ଦୁବେଙ୍କ ବାସଭବନରେ ଏକ ପରିଚାଳନା ସମିତି ବୈଠକ ଡକାଇ ସମ୍ବଲପୁର ଠାରେ ମେଡ଼ିକାଲ କଲେଜ ପ୍ରତିଷ୍ଠା ଦାବି କରି ପ୍ରସ୍ତାବ ପାସ କରିବାକୁ । ସେତେବେଳେ ସ୍ୱାସ୍ଥ୍ୟମନ୍ତ୍ରୀ ଡାକ୍ତର ରାମପ୍ରସାଦ ମିଶ୍ର ଗସ୍ତରେ ଆସି ବଲାଙ୍ଗୀରରେ ଥାଆନ୍ତି । ମୁଖ୍ୟମନ୍ତ୍ରୀ ଏହି ପରିଚାଳନା ସମିତି ବୈଠକରେ ଯୋଗ ଦେବାକୁ ସ୍ୱାସ୍ଥ୍ୟମନ୍ତ୍ରୀଙ୍କୁ ନିର୍ଦ୍ଦେଶ ଦେଲେ । ମୁଖ୍ୟମନ୍ତ୍ରୀ ଆମ୍ଭଙ୍କ ମଧ୍ୟ ଏହି ବୈଠକରେ ଯୋଗ ଦେଲେ । ସମ୍ଭବତଃ ହୀରାକୁଦ ବନ୍ଧ ଯୋଜନାର ଉଦ୍ବୃତ୍ତ ଜମି ଓ କିଛି କୋଠାଘର ଯୋଗାଇ ଦେବାକୁ ପ୍ରସ୍ତାବ ଦେଇ ମୁଖ୍ୟମନ୍ତ୍ରୀ ତାଙ୍କୁ ବୈଠକରେ ଯୋଗଦେବାପାଇଁ ନିର୍ଦ୍ଦେଶ ଦେଇଥିଲେ । ଏବଂ ସେଥିପାଇଁ ସମ୍ଭବ ହେଲା, ମେଡ଼ିକାଲ କଲେଜ ବୁର୍ଲା ଠାରେ ପ୍ରତିଷ୍ଠିତ ହେବ । ପରିଶେଷରେ [redacted] ବିରୋଧ ସତ୍ତ୍ୱେ ୧୯୫୯ରେ ବୁର୍ଲା ମେଡ଼ିକାଲ କଲେଜ ପ୍ରତିଷ୍ଠା କରାଗଲା । କଲେଜର ପ୍ରଥମ ପରିଚାଳନା ସମିତିରେ ମୁଁ

ମନୋନୀତ ହୋଇଥିଲି । ଏହାପରେ ଅନେକ ବର୍ଷ ପର୍ଯ୍ୟନ୍ତ ମୁଁ ଏହି ଦାୟିତ୍ୱ ତୁଲାଇଥିଲି ।

ପ୍ରାୟ ଦଶବର୍ଷଧରି ଜେଲ ପରିଦର୍ଶକ ନିଯୁକ୍ତ ହେବା ସହିତ ମୁଁ ଅଧିକାଂଶ ସ୍କୁଲ ଓ କଲେଜ ପରିଚାଳନା ସମିତିକୁ ମନୋନୀତ ହୋଇଥିଲି । ଉତ୍କଳ ବିଶ୍ୱବିଦ୍ୟାଳୟ ସିନେଟରେ ମଧ୍ୟ ମୁଁ ସଭ୍ୟ ଥିଲି । ପଟ୍ଟନାୟକପଡ଼ା ହାଇସ୍କୁଲର ସମ୍ପାଦକ ଭାବରେ କମିଶନର ଶିବରମଣଙ୍କ ସାହାଯ୍ୟ ଏବଂ କଲ୍ଲାପାଲି ଏ.ପି. ପ୍ରକାଶଙ୍କ ସହଯୋଗରେ ସ୍କୁଲର ଅନେକ ଗୁଡ଼ିଏ ଉନ୍ନତି ମୂଳକ କାର୍ଯ୍ୟ କରିବାକୁ ସକ୍ଷମ ହୋଇ ପାରିଥିଲି । କମିଶନର ସ୍କୁଲର ଉନ୍ନତିପାଇଁ ଅନେକ ପରିମାଣରେ ଅର୍ଥ ମଞ୍ଜୁର କରିଥିଲେ । ସହର ଭିତରେ ଅବସ୍ଥିତ ଥିବାରୁ ମୁଁ ସ୍କୁଲର ନାମ ଉଦ୍ୟମ କ୍ରମେ ପଟ୍ଟନାୟକପଡ଼ା ପରିବର୍ତ୍ତେ ଟାଉନ ହାଇସ୍କୁଲକୁ ପରିବର୍ତ୍ତନ କରିଥିଲେ । ଇତିମଧ୍ୟରେ ପ୍ରଦେଶ କଂଗ୍ରେସ କମିଟି ନେତୃତ୍ୱରେ ବ୍ୟାପକ ପରିବର୍ତ୍ତନ ହୋଇଥାଏ । ବିଜୁ ପଟ୍ଟନାୟକ ସଭାପତି ନିର୍ବାଚିତ ହୋଇଥିଲେ ଏବଂ ମହତାବ ମନ୍ତ୍ରୀମଣ୍ଡଳ ଇସ୍ତଫା ଦେଇଥାଆନ୍ତି । ୧୯୬୧ ମସିହାର ମଧ୍ୟଭାଗରେ ମଧ୍ୟବର୍ତ୍ତିକାଳୀନ ନିର୍ବାଚନ ଘୋଷିତ ହୋଇଥାଏ । ବିଜୁ ପଟ୍ଟନାୟକଙ୍କ ସହିତ ମୋର ଘନିଷ୍ଠତା, ତ୍ରିପାଠୀ ବୀରେନ ମିତ୍ର, ନୀଳମଣି ରାଉତରାୟ ପ୍ରମୁଖ ମୋର ବନ୍ଧୁ ହୋଇଥିଲେ ମଧ୍ୟ କେତେକ ପ୍ରତିକ୍ରିୟାଶୀଳ ଶକ୍ତି ଯେଉଁମାନଙ୍କ ଭିତରୁ ଅଧିକାଂଶ ସମ୍ବଲପୁର ବାହାରର ଲୋକ । ସେମାନେ ଚକ୍ରାନ୍ତ ଚଳାଇଥାନ୍ତି ମତେ ବିଧାନସଭା ପ୍ରାର୍ଥୀ ମନୋନୟନ ନ କରିବା ଲାଗି । ଶେଷରେ ପ୍ରବଳ ଚେଷ୍ଟା ଏବଂ ଜନସାଧାରଣଙ୍କ ଇଚ୍ଛା ଓ ସମର୍ଥନ ବଳରେ ଶେଷ ମୁହୂର୍ତ୍ତରେ ମତେ ସଦର ଆସନରୁ ଛିଡ଼ା ହେବା ପାଇଁ ମନୋନୀତ କରାଗଲା ।

ଶ୍ରଦ୍ଧାକର ସୂପକାର ସେତେବେଳେ ପାର୍ଲିଆମେଣ୍ଟ ସଭ୍ୟ ଥାଆନ୍ତି । ମୁଁ ତାଙ୍କ ପାଖକୁ ଚିଠି ଲେଖି ମୋ ସ୍ଥାନରେ କଂଗ୍ରେସ ଦଳର ପ୍ରାର୍ଥୀ ହେବାକୁ ଅନୁରୋଧ କଲି । ସେ ଦିଲ୍ଲୀରୁ ମୋ ପାଖକୁ ଏକ କଦର୍ଯ୍ୟ ଚିଠି ଲେଖି ମୁଁ କଂଗ୍ରେସ ଦଳରେ ଯୋଗଦାନ କରି ବିଧାନସଭା ପାଇଁ ପ୍ରାର୍ଥୀତ୍ୱ ଗ୍ରହଣ କରିଥିବାରୁ ତିରସ୍କାର କରିଥିଲେ । ସେ ଚିଠି ପାଇ ମୁଁ ମନ ଖରାପ କରିନଥିଲି । ଯେତେବେଳେ ସେ ଦିଲ୍ଲୀରୁ ଆସିଲେ, ମୁଁ ତାଙ୍କ ଘରକୁ ଯାଇ ପୁଣି ଥରେ କଂଗ୍ରେସ ପ୍ରାର୍ଥୀ ଭାବରେ ମୋ ସ୍ଥାନରେ ଲଢ଼ିବାକୁ ଅନୁରୋଧ କଲି । ସ୍ପଷ୍ଟ ଭାବରେ ମନାକଲେ । ତାଙ୍କ ପାଖରୁ ଫେରିଆସି

ମୁଁ ନିର୍ବାଚନ ପ୍ରଚାର କାର୍ଯ୍ୟରେ ଲାଗିପଡ଼ିଲି । ଶ୍ରୀଚନ୍ଦ୍ର ଭଣ୍ଡଦର ପ୍ରାର୍ଥୀ ଭାବରେ ସ୍ୱର୍ଗତ ସୂତକାର ମୋ ବିରୁଦ୍ଧରେ ନିର୍ବାଚନ ଲଢ଼ି ବହୁ ଭୋଟରେ ପରାସ୍ତ ହେଲେ । ନିର୍ବାଚନ ପରେ ମତେ ଉପମନ୍ତ୍ରୀ ପଦ ଯାଚାଗଲା ଓ ମୁଁ ତାକୁ ପ୍ରତ୍ୟାଖ୍ୟାନ କଲି । ଶେଷରେ ପଣ୍ଡିତ ଜବାହାରଲାଲ ନେହେରୁଙ୍କ ହସ୍ତକ୍ଷେପ ଫଳରେ ମୁଁ କେବିନେଟ ମନ୍ତ୍ରୀ ହେଲି ।

ମୁଁ ବିଧାୟକ ଭାବରେ ସକ୍ରିୟ ଥିଲି । ମୋ ନିର୍ବାଚନ ମଣ୍ଡଳୀ ଅନ୍ତର୍ଭୁକ୍ତ ଧମାଥାନା ଏବଂ ସଦରଥାନାର ପ୍ରତ୍ୟେକ ଗ୍ରାମ ତଥା ସମ୍ବଲପୁର ସହରରେ ଅନେକ ଉନ୍ନୟନ ମୂଳକ କାର୍ଯ୍ୟ କରାଇଥିଲି । ମୁଁ ମୋ ଡାଏରୀରେ ଯେଉଁଠି ଯାହା ଦେଖୁଥିଲି, ଲୋକେ ଯାହା ଅପତି ଅଭିଯୋଗ କରୁଥିଲେ ସବୁକୁ ଟିପି ନେଇ ସମସ୍ୟା ଗୁଡ଼ିକର ଯଥା ସମ୍ଭବ ସମାଧାନ ପାଇଁ ଚେଷ୍ଟା କରୁଥିଲି । ମୁଁ ସମ୍ବଲପୁରର ଏକ ପ୍ରତିଷ୍ଠିତ ପରିବାରର ସନ୍ତାନ । ମୋର ପିତା, ମାତାମହ ଏବଂ ମାମୁଁ ସୁପ୍ରତିଷ୍ଠିତ ଆଇନଜୀବୀ ଥିଲେ । ସେମାନେ ଜିଲ୍ଲା ବୋର୍ଡ଼ ଓ ମ୍ୟୁନିସିପାଲିଟି ଆଦିର ଚେୟାରମେନ ରହିଥିଲେ । ଏହା ଫଳରେ ମୁଁ ସମଗ୍ର ଜିଲ୍ଲାରେ ସୁପରିଚିତ ହୋଇପାରି-ଥିଲି । ସମ୍ବଲପୁରର ରାଜନୈତିକ ଲୋକ ମାନଙ୍କ ମଧ୍ୟରେ ମୋର ସର୍ବାଧିକ ଜନସମ୍ପର୍କ ରହିଥିଲା । ଏବଂ ଗ୍ରାମବାସୀ ମାନଙ୍କର ବ୍ୟକ୍ତିଗତ ସମସ୍ୟା ସମାଧାନ କରିବାକୁ ମଧ୍ୟ ମତେ ଆନନ୍ଦ ମିଳୁଥିଲା । ସାରିବରୁଦ କର୍ମୀବୃନ୍ଦ ସଙ୍ଘ, ଭାରତ ସେବକ ସମାଜ, ରାଷ୍ଟ୍ରଭାଷା ପ୍ରଚାର ସଭା ଆଦି ଅନେକ ଅନୁଷ୍ଠାନର ମୁଁ ସଭାପତି ନିର୍ବାଚିତ ହୋଇଥିଲି । ମୁଖ୍ୟଶାସନ ସଚିବଙ୍କ ସହ ପରାମର୍ଶରେ ମୁଁ ପ୍ରଥମରେ ଯେଉଁ ବିଶିଷ୍ଟ କାର୍ଯ୍ୟ-ମାନ କରାଇଥିଲି ତାହା ହେଲା ଏଗାରଲକ୍ଷ ଟଙ୍କା ବ୍ୟୟରେ ଅନୁପାଲିଠାରୁ ଝାରମହାରାଜପୁର ପର୍ଯ୍ୟନ୍ତ ଧମାରାସ୍ତା । ମଧ୍ୟବର୍ତ୍ତୀ ସମସ୍ତ ନଦୀ ଓ ନାଳ ଉପରେ ପୋଲ ମଧ୍ୟ ନିର୍ମିତ ହୋଇଥିଲା ।

୧୯୬୧ ମସିହାରେ ଥରେ ମୁଁ ଡ଼ି.ପି.ଆଇ (ଶିକ୍ଷା ନିର୍ଦ୍ଦେଶକ) କାର୍ଯ୍ୟାଳୟକୁ ଗଲାବେଳେ ମୋତେ କୁହାଗଲା ଯେ ଉପଯୁକ୍ତ ସ୍ଥାନ ଅଭାବରୁ ସମ୍ବଲପୁରରେ ପ୍ରଶିକ୍ଷଣ ମହାବିଦ୍ୟାଳୟ ଖୋଲିବା ସମ୍ଭବ ହେଉନାହିଁ । ଏହାପରେ ଡ଼ି.ପି. ଆଇ ଯେତେବେଳେ ସମ୍ବଲପୁର ଗସ୍ତରେ ଆସିଲେ ମୁଁ ବୃକସ୍ଫିଲ୍ଡର ନିମ୍ନ ଦେଶରେ ଥିବା ବର୍ତ୍ତମାନର ପ୍ରଶିକ୍ଷଣ

ମହାବିଦ୍ୟାଳୟ ଜାଗାଟିକୁ ଦେଖାଇଲି । ତାସହିତ ଏହାର ସଂଲଗ୍ନ ସଂରକ୍ଷିତ ଜଙ୍ଗଲ ଛାତ୍ରାବାସ ନିମନ୍ତେ ଦେଖାଇଲି । ଏହାର କିଛିଦିନ ପରେ ପରେ ମୁଁ କେତେଜଣ ମଜୁରିଆଙ୍କୁ ସାଙ୍ଗରେ ନେଇ ବର୍ତ୍ତମାନ ଛାତ୍ରାବାସ ଥିବା ସ୍ଥାନଟିକୁ ଜବରଦଖଲ କଲି । ଏଥିପାଇଁ ଆମ ନାମରେ ମାମଲା ଦାଏର ହୋଇଥିଲା । କିନ୍ତୁ, ଆମର ଦୃଢ଼ତା ଓ ଲୋକଙ୍କର ଆନ୍ତରିକ ସମର୍ଥନ ହେତୁ ମୁଖ୍ୟ ବନସଂରକ୍ଷକ ଶ୍ରୀ ଗୈାଁଧୂରୀ ପ୍ରକୃତ କଥା ବୁଝିପାରି ମାମଲା ପ୍ରତ୍ୟାହାର କରିନେଇଥିଲେ । ଏହା ହେଉଛି ୧୯୬୬ ମସିହାରେ ପ୍ରଶିକ୍ଷଣ ମହାବିଦ୍ୟାଳୟ ଓ ତାର ଛାତ୍ରାବାସ ନିର୍ମାଣର କାହାଣୀ ।

ବୋଧହୁଏ ୧୯୬୧ ମସିହାର ଅଗଷ୍ଟ ମାସରେ ତତ୍କାଳୀନ ମୁଖ୍ୟମନ୍ତ୍ରୀ ବିଜୁ ପଟ୍ଟନାୟକ ମୋ ପାଖକୁ ଟେଲିଫୋନ କରି ଗଣତନ୍ତ୍ର ପରିଷଦର କାର୍ଯ୍ୟକାରୀ ସମିତି ସଭ୍ୟ ଶ୍ରୀ ସୁଧାକର ସୁପକାରଙ୍କୁ ଯଦି କଂଗ୍ରେସଦଳରେ ଗ୍ରହଣ କରାଯାଏ ଓ ପ୍ରତିବଦଳରେ କୌଣସି ପଦପଦବୀରେ ଅଧିଷ୍ଠିତ କରାଯାଏ ତେବେ ଆମର ଆପତ୍ତି ଅଛି କି ? ବୋଲି ପଚାରିଲେ । ମୁଁ ସେହି ପ୍ରସ୍ତାବକୁ ସ୍ୱାଗତ ଜଣାଇଲି ଏବଂ ତଦନୁସାରେ ଶ୍ରୀ ସୁପକାରଙ୍କୁ ଓଡ଼ିଶାରୁ ରାଜ୍ୟସଭା ପାଇଁ ପ୍ରାର୍ଥୀ କରାଗଲେ । ନିର୍ଦ୍ଧାରିତ କାର୍ଯ୍ୟକାଳ ଶେଷ ହୋଇ ନଥିବା ଏକ ଖାଲି ସ୍ଥାନରୁ ତାଙ୍କୁ ପ୍ରାର୍ଥୀ କରାଗଲା ।

୧୯୬୨ ପ୍ରାରମ୍ଭରେ ଲଣ୍ଡନ ସ୍ଥିତ ପାଣ୍ଡୀମ ସିଭିଲ ଇଣ୍ଟରନେଶନାଲ ନାମକ ଏକ ଆନ୍ତର୍ଜାତୀୟ ସ୍ୱେଚ୍ଛାସେବୀ ସଂସ୍ଥାର ବାଇଶ ଜଣ ସ୍ୱେଚ୍ଛାସେବୀ ମୋର ଭୁବନେଶ୍ୱର ଏମ୍ ଏଲ୍ ଏ କ୍ୱାର୍ଟରକୁ ଆସି ସେମାନଙ୍କୁ ହାତୀବାରି କୁଷ୍ଠାଶ୍ରମରେ ପହଞ୍ଚାଇ ଦେବାଲାଗି ଅନୁରୋଧ କଲେ । ଇଂଲଣ୍ଡ, ଆମେରିକା, ଡେନମାର୍କ, ନରୱେ, ପାକିସ୍ଥାନ ଆଦି ଦେଶର ସ୍ୱେଚ୍ଛାସେବୀମାନେ ଏହି ଦଳରେ ଥିଲେ । ଦଳର ନେତୃତ୍ୱ ନେଉଥିଲେ କୁମାରୀ ମାସେଲବାଉଡ଼ ଆମେରିକାରେ କୁଷ୍ଠରୋଗୀମାନଙ୍କ କଲ୍ୟାଣ ପାଇଁ ଗଠିତ ସୋସାଇଟିର ସଭାପତିଙ୍କ କନ୍ୟା ଯେ କି ହାତୀବାରି ସମ୍ପର୍କରେ ଖବର ରଖି କୁଷ୍ଠାଶ୍ରମ ପାଇଁ ଆର୍ଥିକ ସହାୟତା ମଧ୍ୟ ପଠାଇଥିଲେ । ସେମାନେ ହାତୀବାରିରେ ଦୁଇତିନି ମାସର ଗ୍ରୀଷ୍ମାବକାଶ ଅତିବାହିତ କରିବାକୁ ଚାହୁଁଥିଲେ । ସ୍ୱେଚ୍ଛାସେବୀମାନେ ଭୁବନେଶ୍ୱରରୁ ସମ୍ବଲପୁର ପାଦରେ ଚାଲିକରି ଆସିଲେ । ମୁଁ ସମ୍ବଲପୁରକୁ ଆସି ସେମାନଙ୍କୁ ସ୍ୱାଗତ

ଜଣାଇଲି । କନଭେଣ୍ଟ ସ୍କୁଲରେ ସେମାନଙ୍କର ଖାଇବା ଓ ରହିବା ବ୍ୟବସ୍ଥା ହୋଇଥିଲା । ସେତେବେଳେ ମୁଁ କନଭେଣ୍ଟର ସମ୍ପାଦକ ଥିଲି ।

ସ୍ୱେଚ୍ଛାସେବୀମାନେ ଦିନେ ଦୁଇଦିନ ବିଶ୍ରାମ ନେଲା ପରେ କନ୍‌ଭେଣ୍ଟର ସିଷ୍ଟର୍‌ମାନଙ୍କ ସହିତ ସ୍ୱେଚ୍ଛାସେବୀମାନଙ୍କୁ ହାତିବାରିରେ ପହଞ୍ଚାଇ ଦେଇ ଆସିଲୁ । ହାତିବାରି କୁଷ୍ଠାଶ୍ରମରେ ପ୍ରତ୍ୟେକ ଘରେ ଦୁଇ-ଜଣ କରି ସ୍ୱେଚ୍ଛାସେବୀ ରହିଲେ । ରୋଗୀମାନଙ୍କ ସେବା ଶୁଶ୍ରୂଷା କଲେ ଓ ରୋଗୀମାନଙ୍କ କ୍ଷତ ପରିଷ୍କାର କରିବା କାର୍ଯ୍ୟରେ ଲାଗିଲେ । କଲୋନୀରେ ସେମାନେ ଅନେକ ହିତକର କାମ କଲେ । ତିନିମାସ ଭିତରେ ହାତିବାରି ଏକ ମନୋରମ ସ୍ଥଳରେ ପରିଣତ ହେଲା ଓ ଦୂରଦୂରାନ୍ତରୁ ଲୋକେ ପରିଦର୍ଶନ କରିବାକୁ ଆସିଲେ ।

ପ୍ରତି ସପ୍ତାହାନ୍ତରେ କନଭେଣ୍ଟରମାନଙ୍କ ସହିତ ମୁଁ ଓ ଚର୍ଚ୍ଚର ଫାଦର ହାତିବାରି କୁଷ୍ଠାଶ୍ରମକୁ ଯାଇ ପ୍ରତି ରବିବାର ଦିନ ଔଷଧ ଆଦି ଜିନିଷ ନିଶୁଳ୍କ ବଣ୍ଟନ କରି ଆସୁଥିଲୁ ।

୧୯୬୨ରେ ମୁଁ ରାଜ୍ୟପାଳଙ୍କୁ ଗଙ୍ଗାଧର ମେହେର ମହା-ବିଦ୍ୟାଳୟ ଖୋଲିବାକୁ ରାଜି କରାଇବାରେ ସଫଳ ହେଲି । ତାହା ୧୯୬୫ରୁ ଆଜି ପର୍ଯ୍ୟନ୍ତ ଚାଲିଛି । ସେହିବର୍ଷ ସର୍ବସାଧାରଣଙ୍କ ସହାୟତାରେ ବୃହତ୍ ସ୍ଥଳରେ କନଭେଣ୍ଟଟିଏ ଖୋଲିଲା । ବର୍ତ୍ତମାନ ତାହା ଏକ ବୃହତ୍ତମ ଶିକ୍ଷାକେନ୍ଦ୍ରରେ ପରିଣତ । କନଭେଣ୍ଟର ପରିସର ପ୍ରାୟ ତିନି ଏକର ଅଞ୍ଚଳରେ ପରିବ୍ୟାପ୍ତ ।

୧୯୬୩ ମସିହାରେ ଜନସ୍ୱାସ୍ଥ୍ୟ ବିଭାଗ ସହାୟତାରେ ଜିଲ୍ଲାର (ଅବିଭକ୍ତ) ବିଭିନ୍ନ ସହର ଓ ଗ୍ରାମକୁ ପାଇପ ଜଳଯୋଗାଣ ବ୍ୟବସ୍ଥା କଲି । ଏହି ଯୋଜନା ଗୁଡ଼ିକ ବର୍ଷ ବର୍ଷ ଧରି ପଡ଼ି ରହିଥିଲା । ମୋ ଆବେଦନରେ ଜନସ୍ୱାସ୍ଥ୍ୟ ବିଭାଗ ଶେ ୫ ଦିଭୁଲର ରାଣୀସଞ୍ଚି ମନ୍ଦିରକୁ, ଅନ୍ୟ ଦିଗରେ ଗୋପାଳମାଳ ଏବଂ ସାକ୍ଷୀଗୋପୀନାଥ ଅଞ୍ଚଳକୁ ମଧ୍ୟ ପାଇପ ବସାଇ ଜଳଯୋଗାଣ ବ୍ୟବସ୍ଥା କଲେ । ସେହିପରି ଗଞ୍ଜାମ ଜିଲ୍ଲାର ଲୋକେ ମିଠାପାଣିର ଘୋର ଅଭାବ ଅନୁଭବ କରୁଥିଲେ ଏବଂ ଘରୋଇ ବ୍ୟବହାର ପାଇଁ ମଧ୍ୟ ଲୁଣିପାଣି ଉପରେ ନିର୍ଭର କରୁଥିଲେ । ତେଣୁ ଜିଲ୍ଲାର ପ୍ରତି ଗଳିକନ୍ଦି ଓ ଲୁଣା ଅଞ୍ଚଳରେ ପିଇବାପାଣି ଯୋଗାଇବାକୁ ଜନସ୍ୱାସ୍ଥ୍ୟ

ବଭାଗକୁ ନର୍ଦ୍ଦେଶ ଦେଲି । ସେହିପରି ମୋର କାର୍ଯ୍ୟକାଳରେ ବଭିନ୍ନ ଜିଲ୍ଲାରେ ମୁଖ୍ୟତଃ ସମ୍ବଲପୁରର ମୁଦିପଡ଼ାଛକ, ହୀରାକୁଦ, ବୁର୍ଲା ଆଦିର ବସ୍ତି ଅଞ୍ଚଳରେ 'ସ୍ଲମ' କ୍ଲିୟରେନ୍ସ ଯୋଜନା ରୂପାନ୍ତରିତ କରି କୋଠା ଘର ନିର୍ମାଣ କରାଯାଇଥିଲା ।

ମୁଁ ଶିଳ୍ପ ବିଭାଗର ଦାୟିତ୍ୱ ନେଲା ପରେ ଜଣେ ସଚିବ ତଥା କମିଶନର (ଆୟୁକ୍ତ) ପାହ୍ୟାର ଜଣେ, ଜଣେ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସହିତ ଘନିଷ୍ଠତାର ସୁବିଧା ଉଠାଇବା ଲାଗି ମୋତେ ଅବଜ୍ଞା ପ୍ରଦର୍ଶନ କରୁଥିବା ଶୁଣିଲି । ମୁଁ ତାଙ୍କୁ ରୋକ୍‌ଠୋକ୍ ଜଣାଇଦେଲି ଯେ ମୁଁ ହେଉଛି ବିଭାଗର ମନ୍ତ୍ରୀ ଏବଂ ସର୍ବୋଚ୍ଚ କର୍ତ୍ତା । କାର୍ଯ୍ୟରେ କୌଣସି ପ୍ରକାର ତ୍ରୁଟି ହେଲେ ପୂର୍ବତନ ମୁଖ୍ୟମନ୍ତ୍ରୀଙ୍କ ସହିତ ତାଙ୍କ ଘନିଷ୍ଠତା ତାଙ୍କୁ ରକ୍ଷା କରି ପାରିବ ନାହିଁ । କାର୍ଯ୍ୟରେ ମୁଁ ଦୃଢ଼ତା ପ୍ରଦର୍ଶନ କରିବା ଦେଖି ସେ ବୁଝି-ଗଲେ ଯେ ମୁଁ ସହଜରେ ଡରିଯିବା ଲୋକ ନୁହେଁ ।

୧୯୬୪ରେ ଶିକ୍ଷା ନର୍ଦ୍ଦେଶାଳୟକୁ ମୁଁ ପରାମର୍ଶ ଦେଲି ଗଙ୍ଗାଧର ମେହେର ମହାବିଦ୍ୟାଳୟରେ ଉପାଧ୍ୟୋତ୍ତର ଶ୍ରେଣୀ ଖୋଲିବା ପାଇଁ । ଏଥିପାଇଁ ଅଧ୍ୟାପକ ଡକ୍ଟର ମହେନ୍ଦ୍ର ରାଉତଙ୍କୁ ନର୍ଦ୍ଦେଶାଳୟ ଏକ ସମ୍ଭାବ୍ୟ ରିପୋର୍ଟ ଦେବାପାଇଁ ନିଯୁକ୍ତ କରିଥିଲେ । ତାଙ୍କ ସହିତ ଏକ ମିଳିତ କାର୍ଯ୍ୟକ୍ରମ ଗ୍ରହଣ କଲି । ସେତେବେଳେ ମହାବିଦ୍ୟାଳୟର ଅଧ୍ୟକ୍ଷ ଥାଆନ୍ତି ପ୍ରଫେସର ବ୍ରଜବନ୍ଧୁ ମିଶ୍ର । ପରେ ସେ ବିଶ୍ୱବିଦ୍ୟାଳୟ ପ୍ରଶାସକ ନିଯୁକ୍ତ ହୋଇଥିଲେ । ୧୯୬୫ରେ ସରକାର ଗଙ୍ଗାଧର ମେହେର ମହା-ବିଦ୍ୟାଳୟରେ ଉପାଧ୍ୟୋତ୍ତର ଶ୍ରେଣୀ ଖୋଲିଲେ ।

ଆଇନମନ୍ତ୍ରୀ ଥିବା ସମୟରେ ବରଗଡ଼, ଭଦ୍ରକ ଏବଂ ଅନ୍ୟାନ୍ୟ ମୁଖ୍ୟ ସ୍ଥାନମାନଙ୍କରେ ସବ୍‌ଜଜ୍ କୋର୍ଟ ସ୍ଥାପନ ପାଇଁ ଦ୍ରୁତ ପଦକ୍ଷେପ ଦିଗରେ କାର୍ଯ୍ୟ କଲି । କିନ୍ତୁ, କେତେଜଣ କହିଲେ ଯେ, ମୁଁ କୁଆଡ଼େ ଅନ୍ୟମାନଙ୍କ ଆୟରେ ବାଧା ସୃଷ୍ଟି କରୁଛି । ଏଣିକି ଏକ ପ୍ରସ୍ତାବ ମଧ୍ୟ ମୋ ବିରୁଦ୍ଧରେ କରାଗଲା ।

ତା' ପୂର୍ବରୁ ସମ୍ବଲପୁରର କେତେକ ଦେଶପ୍ରେମୀ 'ଉଚ୍ଚତର ଶିକ୍ଷା ସହାୟକ' ନାମରେ ଏକ ପଞ୍ଜୀକୃତ ସଙ୍ଗଠନ ପ୍ରତିଷ୍ଠା କରି ପଦ୍ମପୁର, ବରପାଲି, ବରଗଡ଼, କୁଚିଣ୍ଡା, ରେଢ଼ାଖୋଲ, ହୀରାକୁଦ ଓ ବୁର୍ଲାଠାରେ ମହାବିଦ୍ୟାଳୟ ସ୍ଥାପନ ଦିଗରେ ପୃଷ୍ଠପୋଷକତା ଗ୍ରହଣ କରୁଥାଆନ୍ତି । ଡକ୍ଟର ପରମେଶ୍ୱର ମିଶ୍ରଙ୍କ ପରେ ମୁଁ ଏହାର ସଭାପତି ଦାୟିତ୍ୱ ଗ୍ରହଣ କଲି । ଡଃ ମିଶ୍ର ଜଣେ ସୁବିଦିତ ବୈଜ୍ଞାନିକ ଓ ଶିକ୍ଷାବିତ ଥିଲେ ।

ଜନସାଧାରଣଙ୍କ ସୁବିଧା ତଥା ଆଇନ ଶିକ୍ଷାର ପ୍ରସାର ନିମନ୍ତେ ସମ୍ବଲପୁରଠାରେ ଏକ ଆଇନ ମହାବିଦ୍ୟାଳୟ ଖୋଲିବା ପାଇଁ ଟ୍ରଷ୍ଟ-ଫଣ୍ଡରେ ୧୯୬୫ରେ ପ୍ରସ୍ତାବ ଉପସ୍ଥାପନ କଲି । ପୁଣି, ଫଣ୍ଡ ତଥା ବାହାରର କେତେଜଣ ମୋର ତୀବ୍ର ବିରୋଧ କଲେ । ମୁଁ ମଧ୍ୟ ଟ୍ରଷ୍ଟଫଣ୍ଡର ଜଣେ ସଭ୍ୟ ଥିଲି । ପରିଶେଷରେ ଟ୍ରଷ୍ଟଫଣ୍ଡ ସହାୟତା ଫଳରେ ସମ୍ବଲପୁର ଠାରେ ଏକ ଆଇନ ମହାବିଦ୍ୟାଳୟ ସ୍ଥାପନ କରିବାରେ ସଫଳ ହେଲୁ । ପ୍ରତିଷ୍ଠାର ତିନି ଚାରି ବର୍ଷ ପରେ ଅନୁକୂଳ ପରିସ୍ଥିତି ସୃଷ୍ଟି କରି ଆଇନ ମହାବିଦ୍ୟାଳୟକୁ ବିଶ୍ୱବିଦ୍ୟାଳୟ ହାତକୁ ନେଲେ । ଏହା ୧୯୬୮-୬୯ ମସିହା ବେଳର କଥା । ଓଡ଼ିଶା ପାଇଁ ଏକ କେନ୍ଦ୍ରୀୟ ବିଦ୍ୟାଳୟ ମଞ୍ଜୁର ହୋଇଥାଏ । କିନ୍ତୁ, ରାଜ୍ୟ ଶିକ୍ଷା ବିଭାଗର କେତେକ କର୍ମକର୍ତ୍ତା ରାଜ୍ୟର ଅନ୍ୟ କେଉଁଠି (ରାଜଧାନୀ ଆଖପାଖରେ) ତାକୁ ଖୋଲିବା ପାଇଁ ଚେଷ୍ଟିତ ଥାଆନ୍ତି । ତେଣୁ ଦିଲ୍ଲୀ ଯିବା ସମୟରେ କେନ୍ଦ୍ରର ସହକାରୀ ସଚିବ ଶ୍ରୀ ଯୋଷୀଙ୍କୁ ଭେଟି ବିଦ୍ୟାଳୟଟି ସମ୍ବଲପୁରଠାରେ ସ୍ଥାପନ କରିବା ପାଇଁ ଅନୁରୋଧ ଜଣାଇଲି । ଏବେ ୧୯୯୧ ମସିହାରେ ଉକ୍ତ ବିଦ୍ୟାଳୟର ରଜତ ଜୟନ୍ତୀ ଉତ୍ସବ ରାଜ୍ୟପାଳଙ୍କ ପୌରହିତ୍ୟରେ ପାଳିତ ହୋଇଯାଇଛି । ସେହି ଉତ୍ସବରେ ରାଜ୍ୟପାଳ ମତେ ଏକ ସିଲିକ ଉପାୟନ ଉପହାର ଦେଇଥିଲେ ଏବଂ ଏଠାରେ ବିଦ୍ୟାଳୟଟି ଖୋଲିବାରେ ମୋର ବ୍ୟକ୍ତିଗତ ପ୍ରଚେଷ୍ଟାରେ ହୋଇଥିବାରୁ ସେ ପ୍ରଶଂସା କରି କୃତଜ୍ଞତା ଜଣାଇଥିଲେ ।

୧୯୬୩ରେ ଶ୍ରୀ ବୃନ୍ଦାବନ ପଟେଲ ଓଡ଼ିଶା ଶିକ୍ଷା ସମାଜର ଏକ ବୈଠକରେ ପଶ୍ଚିମ ଓଡ଼ିଶାରେ ଏକ ବିଶ୍ୱବିଦ୍ୟାଳୟ ଦାବୀ କରି ରାଜ୍ୟ ସରକାରଙ୍କୁ ଏକ ସ୍ମାରକ ପତ୍ର ଦେବା ଲାଗି ପ୍ରସ୍ତାବ ଦେଇଥିଲେ । ସମିତି ଏହି ପ୍ରସ୍ତାବ ଗ୍ରହଣ କରି ଅନ୍ୟାନ୍ୟ ବିଶ୍ୱବିଦ୍ୟାଳୟରୁ ଆନୁଷାଙ୍ଗିକ କାଗଜପତ୍ର ସଂଗ୍ରହ କରି ତଥା ସ୍ମାରକ ପତ୍ର ପ୍ରସ୍ତୁତ କରିବା ଲାଗି ଶ୍ରୀ ପଟେଲଙ୍କୁ ଦାୟିତ୍ୱ ଦେଲେ । ପରେ ଅନୁମୋଦିତ ସ୍ମାରକ ପତ୍ରଟି ରାଜ୍ୟପାଳଙ୍କୁ ପ୍ରଦାନ କରାଗଲା । ତାର ନକଲ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ ଏବଂ କେନ୍ଦ୍ର ଶିକ୍ଷାମନ୍ତ୍ରୀଙ୍କୁ ପ୍ରଦାନ କରାଯାଇ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ବ୍ୟାପକ ଜନସମର୍ଥନ ହାସଲ କରାଇବା ପାଇଁ ମୁଁ ଓ ଶିକ୍ଷା ସମାଜର ଅନ୍ୟ କାର୍ଯ୍ୟକାରୀ ସଭ୍ୟମାନେ କଳାହାଣ୍ଡି ଓ ବଲାଙ୍ଗିର ଆଦି ଜିଲ୍ଲା ଗସ୍ତ କଲୁ । ଜଣେ କାର୍ଯ୍ୟକାରୀ ସମିତି ସଭ୍ୟ ତଥା କେବିନେଟ ମନ୍ତ୍ରୀ ହୋଇଥିବାରୁ ଭୁବନେଶ୍ୱର ଓ ଦିଲ୍ଲୀରେ ବିଶ୍ୱବିଦ୍ୟାଳୟ

ପ୍ରତିଷ୍ଠା ଉଦ୍ୟମକୁ ଆଗେଇ ନେବାର ଦାୟିତ୍ୱ ମୋ ଉପରେ ନ୍ୟସ୍ତ କରାଯାଇଥିଲା ।

ତତ୍କାଳୀନ ରାଜ୍ୟପାଳ ଡକ୍ଟର ଅଯୋଧ୍ୟାନାଥ ଖୋସଲା ସମ୍ବଲପୁରକୁ ଖୁବ୍ ଭଲ ପାଉଥିଲେ ସେ, ମୋତେ ଓ ଶ୍ରୀ ପଟେଲଙ୍କୁ ବହୁତ ଶ୍ରଦ୍ଧା କରୁଥିଲେ । ଡକ୍ଟର ଖୋସଲା ଏବଂ ମୁଁ ଅଲଗା ଅଲଗା ଭାବରେ ଦିଲ୍ଲୀଯାଇ କେନ୍ଦ୍ର ଶିକ୍ଷାମନ୍ତ୍ରୀ ଶ୍ରୀ ଏମ ସି. ଚାଗଲା, ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗର ଅଧ୍ୟକ୍ଷ ଡ଼: ଡ଼. ଏସ. କୋଠାରୀ, ସମ୍ପାଦକ ଡ଼: ଜେ. ପି ନାୟକ ଏବଂ ମନ୍ତ୍ରଣାଳୟର ବରିଷ୍ଠ ଅଧିକାରୀ ମାନଙ୍କ ସଙ୍ଗେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ସମ୍ପର୍କରେ ଆଲୋଚନା କରୁଥିଲୁ । ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ କମିଟି ପଶ୍ଚିମ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରସ୍ତାବକୁ ଗ୍ରହଣ କଲେ-ନାହିଁ । ବରଂ ପଶ୍ଚିମ ଓଡ଼ିଶାରେ ଉତ୍କଳ ବିଶ୍ୱବିଦ୍ୟାଳୟର ଏକ କେନ୍ଦ୍ର ଖୋଲିବାକୁ ସୁପାରିଶ କରିଥିଲେ । ଏତଦ୍ ଅନ୍ତର୍ଗତ ଜିଲ୍ଲା ମାନଙ୍କରେ ଏହି ସୁପାରିଶର ତୀବ୍ର ବିରୋଧ କରାଯାଇଥିଲା ।

ଓଡ଼ିଶାର ( ପଶ୍ଚିମ ଓଡ଼ିଶା ବାହାର ) ର କେତେକ ବୁଦ୍ଧି-ଜୀବୀ ମଧ୍ୟ ଏହି ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରସ୍ତାବ ସପକ୍ଷରେ ଅନୁକୂଳ ମତ ଘୋଷଣା ନକରିବା ଦେଖାଗଲା । ତା'ପରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପ୍ରସ୍ତାବ ଓଡ଼ିଶା ମଂତ୍ରୀ ପରିଷଦକୁ ଆସିଲା । ମୁଖ୍ୟମଂତ୍ରୀ ବୀରେନ ବାବୁ ପ୍ରାରମ୍ଭରେ ଏହାର ସମର୍ଥନ କଲେ ନାହିଁ । ମୋତେ ସବୁ ରକମର ବିରୋଧର ସାମ୍ନା କରିବାକୁ ପଡ଼ିଲା । ତାଙ୍କ ଓ ମୋ ମଧ୍ୟରେ ପ୍ରବଳ ଯୁକ୍ତିତର୍କ ହେଲା । ମୋର ମାନସିକତା ଏପରି ହେଲାଯେ, ସମ୍ଭାଳି ନପାରି ଉଚ୍ଚସ୍ୱରରେ ଆସନ ଛାଡ଼ି ଚାଲିଆସିଲି । ମୁଖ୍ୟ ଶାସନ ସଚିବ ଶ୍ରୀ ଶିବରମଣ ଆମକୁ ଶାନ୍ତ କରାଇଲେ ।

ମୁଁ ପରେ ଡ଼କ୍ଟର ପରିଜାଙ୍କ ଘରକୁ ଯାଇ ଅନୁରୋଧ କଲି ଯେ ସେ ହେଉଛନ୍ତି ମୋର ପିତାଙ୍କ ବନ୍ଧୁ, ମୋର ସମ୍ମାନନୀୟ ଶିକ୍ଷକ,ଆନ୍ତର୍ଜାତୀୟ ସ୍ତରର ଶିକ୍ଷାବିତ ଓ ବୈଜ୍ଞାନିକ ପଶ୍ଚିମ ଓଡ଼ିଶା ତାଙ୍କ ପାଖରୁ ଏଦିଗରେ ଉଦାରତା ଆଶାକରୁଛି ।

ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗର ସମ୍ପାଦକ ଡକ୍ଟର ଜେ.ପି ନାୟକ ସମ୍ବଲପୁରଠାରେ ଦ୍ୱିତୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିମନ୍ତେ ରାଜ୍ୟ

ସରକାରଙ୍କୁ ପ୍ରବର୍ତ୍ତାଇ ସମ୍ମତ କରାଇବା ନିମନ୍ତେ ଭୁବନେଶ୍ୱର ଆସିଲେ । କିନ୍ତୁ ରାଜ୍ୟ ସରକାର ନିଜ ନିଷ୍ପତ୍ତିରେ ଅଟଳ ରହିଲେ । ରାଜ୍ୟପାଳ ଡକ୍ଟର ଖୋସଲା ଏବଂ ମୁଁ ପୁଣି ବିମାନ ଯୋଗେ ଦିଲ୍ଲୀ ଯାଇ ଶିକ୍ଷାମନ୍ତ୍ରୀ ଶ୍ରୀଏମ୍ ସି ଚଗଲା ଓ ଡକ୍ଟର ଡ଼. ଏସ୍ କୋଠାରୀଙ୍କୁ ଭେଟି ଚାଲୁଥିବା ଟାଳଟୁଳ ନୀତି ବିଷୟରେ ଅବଗତ କରାଇଲୁ । ଦିନେ ରାଜ୍ୟପାଳ ଡକ୍ଟର ଖୋସଲା ତାଙ୍କର ଜଙ୍ଗ୍ପୁରା ସ୍ଥିତ ବାସଭବନରେ ଶିକ୍ଷାମଂତ୍ରୀ ଶ୍ରୀ ଚଗଲାଙ୍କ ସମ୍ମାନାର୍ଥେ ଏକ ଭୋଜିର ଆୟୋଜନ କଲେ । ଶ୍ରୀ ଚଗଲାଙ୍କ ବ୍ୟତୀତ ଡକ୍ଟର କୋଠାରୀ, ଡକ୍ଟର ନାୟକ, ମୁଁ ଏବଂ ଆଉ କେତେଜଣ ମଧ୍ୟ ନିମନ୍ତ୍ରିତ ହୋଇଥିଲେ । ସେହି ଭୋଜିରେ ନିଷ୍ପତ୍ତି ହେଲା ଯେ, କେନ୍ଦ୍ର ଶିକ୍ଷାମନ୍ତ୍ରୀ ଶ୍ରୀ ଚଗଲା ନିଜେ ଭୁବନେଶ୍ୱର ଯାଇ ରାଜ୍ୟ ସରକାରଙ୍କୁ ଦ୍ୱିତୀୟ ବିଶ୍ୱବିଦ୍ୟାଳୟ ସମ୍ବଲପୁରରେ ପ୍ରତିଷ୍ଠା ପାଇଁ ରାଜି କରାଇବେ । ତଦନୁସାରେ ସେ ପ୍ରତିଶ୍ରୁତି ରକ୍ଷାକରି ୧୯୬୭ ରେ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗର ସଭାପତି ଡକ୍ଟର ନାୟକଙ୍କୁ ସାଙ୍ଗରେ ନେଇ ଭୁବନେଶ୍ୱର ଆସି ରାଜଭବନରେ ଅବସ୍ଥାନ କଲେ । ତା'ପରଦିନ ରାଜ୍ୟ ସରକାରଙ୍କ ତରଫରୁ ଏକ ଆଲୋଚନା ସଭା ଆୟୋଜନ କରିଲେ । ଏଥିରେ ବହୁ ସରକାରୀ ଓ ବେସରକାରୀ ପଦାଧିକାରୀ ଯୋଗଦେଲେ । ସମ୍ବଲପୁର ଠାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିବାକୁ ନିଷ୍ପତ୍ତି ନେବା ପାଇଁ ସଭାରେ ଆହୂତ ହୋଇଥିଲା । କିନ୍ତୁ ଉଦ୍ଦେଶ୍ୟ ମୂଳକ ଭାବରେ ଏହି ସଭାକୁ ମତେ ନିମନ୍ତ୍ରଣ କରାଗଲା ନାହିଁ । ପଶ୍ଚିମ ଓଡ଼ିଶାରୁ ପ୍ରତିନିଧିତ୍ୱ କରିବା ପାଇଁ ଜଣେ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରାଯାଇଥିଲା । ମୋର ଅନୁପସ୍ଥିତ ରହିବା ଦେଖି ରାଜ୍ୟପାଳ ଡକ୍ଟର ଖୋସଲା ତାଙ୍କର ନିଜ ଗାଡ଼ିରେ ସଚିବ ଶ୍ରୀ ରବି ଦାସଙ୍କୁ ପଠାଇଲେ । ମୋତେ ବ୍ୟକ୍ତିଗତ ଭାବେ ନିମନ୍ତ୍ରଣ କରି ନେବା ଲାଗି । ଡକ୍ଟର ପର୍ଶୁରାମ ମିଶ୍ର ଏବଂ ଶ୍ରୀ ବୃନ୍ଦାବନ ପଟେଲ ମଧ୍ୟ ସେତେବେଳେ ଭୁବନେଶ୍ୱରରେ ଥାଆନ୍ତି । ମୁଁ ସଭାକୁ ବାହାରିବା ପୂର୍ବରୁ ସେମାନେ ମଧ୍ୟ ମୋର ବାସଭବନରେ ଆସି ପହଞ୍ଚି ଯାଇଥିଲେ । ଡକ୍ଟର ମିଶ୍ର ଏବଂ ଶ୍ରୀ ପଟେଲଙ୍କୁ ରାଜଭବନକୁ ଆସିବାକୁ କହି ମୁଁ ଠିକ ଦିନ ଏଗାରଟା ବେଳେ ସଭାସ୍ଥଳ, ରାଜଭବନରେ ପହଞ୍ଚିଲି । ମତେ ଦେଖିବା ମାତ୍ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟ ବିରୋଧୀମାନେ ସନ୍ଦେହ ଚକ୍ଷୁରେ ଚାହିଁଲେ । ଶ୍ରୀ ଚଗଲାଙ୍କୁ ମୁଁ ଅନୁରୋଧ ଜଣାଇଲି ଯେ ବରଣ୍ଡାରେ ଉପସ୍ଥିତ

ଥିବା ଡ଼କ୍ଟର ପର୍ଶୁରାମ ମିଶ୍ର ଏବଂ ଓଡ଼ିଶା ଶିକ୍ଷା ସମାଜର ସମ୍ପାଦକ ଶ୍ରୀ ବୃନ୍ଦାବନ ପଟେଲଙ୍କୁ ସଭାକୁ ନିମନ୍ତ୍ରଣ କରନ୍ତୁ । ତଦନୁଯାୟୀ ସେ ଦୁଇ ଜଣଙ୍କୁ ମଧ୍ୟ ନିମନ୍ତ୍ରଣ କରାଗଲା । ମୋର ଉପସ୍ଥିତିରେ ଶ୍ରୀ ଚଗଲା ଏମିତି ଖୁସି ହୋଇ ଯାଇଥିଲେ ଯେ ମୁଁ ହଲରେ ପ୍ରବେଶ କରିବା ମାତ୍ରେ ସେ ନିଜ ଆସନରୁ ଉଠିପଡ଼ି ମତେ ସ୍ୱାଗତ ଜଣାଇ ତାଙ୍କ ପାଖର ଦୁଇ ଆସନ ବିଶିଷ୍ଟ ସୋଫାରେ ବସିବାକୁ ଅନୁରୋଧ କଲେ । ସଭାକାର୍ଯ୍ୟ ଆରମ୍ଭ ହେଲା । ଡ଼ଃ ପରିଜା ଆଲୋଚନା ଆରମ୍ଭ କଲେ ।

ପଶ୍ଚିମ ଓଡ଼ିଶାରେ ଉତ୍କଳ ବିଶ୍ୱବିଦ୍ୟାଳୟର ଏକ କେନ୍ଦ୍ର ଖୋଲିବା ପାଇଁ ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ କମିଟିର ସୁପାରିଶ କଥା କହିଲେ । ତାଙ୍କର ବକ୍ତବ୍ୟ ଶେଷ ହେବା ପରେ ଶିକ୍ଷାମନ୍ତ୍ରୀ ଶ୍ରୀ ଚଗଲା ଅଂଶଗ୍ରହଣ କରି ଡ଼କ୍ଟର ନାୟକଙ୍କୁ ଭାରତର ବିଶ୍ୱବିଦ୍ୟାଳୟ ମାନଚିତ୍ର ପ୍ରଦର୍ଶନ କରିବାକୁ କହିଲେ । ତା'ପରେ ଉଚ୍ଚ ପଦସ୍ଥ ଶିକ୍ଷା ଅଫିସର କଷ୍ଟ କ[illegible]ଙ୍କୁ ଗଲେ । ଶ୍ରୀ ଚଗଲା ବକ୍ତବ୍ୟ ଦେବାକୁ ସୁଯୋଗ ନେଲେ । ସେ [illegible] ସରକାର ଓ ବିଶ୍ୱବିଦ୍ୟାଳୟ ଅନୁଦାନ ଆୟୋଗ (ୟୁ.ଜି.ସି.)ର [illegible] ଜଣାଇ ସମ୍ବଲପୁର ଠାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଅବିଳମ୍ବେ ପଦ-କ୍ଷେପ ଗ୍ରହଣକରି ପରବର୍ତ୍ତୀରୁ କାର୍ଯ୍ୟକାରୀ କରିବାକୁ ଓଡ଼ିଶା ସରକାରଙ୍କୁ ପରାମର୍ଶ ଦେଇଦେଲେ ।

ଶ୍ରୀ ଚଗଲା ରାଜ୍ୟରେ ଦ୍ୱିତୀୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ସପକ୍ଷରେ ଶିକ୍ଷାବିତ୍ ଖ୍ୟାତି ସମ୍ପନ୍ନ ବ୍ୟକ୍ତି ନ ରହିବା ଆଶ୍ଚର୍ଯ୍ୟ ବୋଲି ଆଲୋଚନାରେ ପ୍ରକାଶ କରି, ବିଶ୍ୱବିଦ୍ୟାଳୟ ଶିକ୍ଷା କ୍ଷେତ୍ରରେ ଓଡ଼ିଶାର ସ୍ଥାନ ଭାରତରେ ନିମ୍ନରେ ! ! କହିଲେ ! ଏହା ଭାବବିହ୍ୱଳିତ ମୁହୂର୍ତ୍ତ ସୃଷ୍ଟି କରିଥିଲା ।

୧୯୬୭ରେ ସମ୍ବଲପୁର ଠାରେ ବିଶ୍ୱବିଦ୍ୟାଳୟ ରାଜ୍ୟପାଳଙ୍କ ଦ୍ୱାରା ଉଦଘାଟିତ ହେଲା । ମୁଖ୍ୟମନ୍ତ୍ରୀ ଶ୍ରୀ ସଦାଶିବ ତ୍ରିପାଠୀ ଏଥିରେ ସଭାପତିତ୍ୱ କରିଥିଲେ । ମତେ ଅନ୍ୟତମ ମୁଖ୍ୟଅତିଥି କରାଯାଇଥିଲା । ଡ଼ଃ ଖୋସଲା ଓ ମୋର ଭାଷଣ ମୁଦ୍ରିତ ହୋଇଥିଲା । ଡ଼ଃ ଖୋସଲା ତାଙ୍କ ଭାଷଣରେ ମତେ ଅଭିନନ୍ଦନ ଜଣାଇଥିଲେ । ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଡ଼ଃ ପର୍ଶୁରାମ ମିଶ୍ର ଏବଂ ଶ୍ରୀ ବୃନ୍ଦାବନ ପଟେଲଙ୍କ ଅବଦାନ ପାଇଁ ମଧ୍ୟ ଶୁଭେଚ୍ଛା ଜଣାଇଥିଲେ । ଏହି ବିଷୟ ତାଙ୍କ ଭାଷଣର ଶେଷ ପର୍ଯ୍ୟାୟରେ ଉଲ୍ଲେଖ କରାଯାଇଛି । ଗଭୀର ଦୁଃଖର ବିଷୟ ଏହି ଯେ ଯେଉଁ ମହାନ ବ୍ୟକ୍ତିମାନେ

ଆମକୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠାରେ ଆନ୍ତରିକ ସାହାଯ୍ୟ କରିଥିଲେ, ସେହି ଶ୍ରୀ ଚଗଲା, ଡ଼ଃ ଖୋସଲା, ଡ଼ଃ କୋଠାରୀ, ଡ଼ଃ ନାୟକ ଏବଂ ଡ଼ଃ ଗୋକକ୍ ଇହଧାମ ଛାଡ଼ି ଯାଇଛନ୍ତି । ତଥାପି ଜଣେ ଏବେ ମଧ୍ୟ ଆମ ଭିତରେ ଅଛନ୍ତି । ସେ ହେଲେ ପ୍ରଫେସର ହୁମାୟୁନ୍ କବୀର ସେ ୍କ ସମସ୍ତ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଅଭିନୟର ସାକ୍ଷୀ, ଜୀବିତ ଅଛନ୍ତି । ସମ୍ବଲପୁର ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ଏକ ଅସାଧାରଣ ଘଟଣା ଏପରିକି ବିରୋଧୀ ଦଳ ନେତା ରାଜେନ୍ଦ୍ର ନାରାୟଣ ସିଂହଦେଓ ଏବଂ କଳାହାଣ୍ଡି ମହାରାଜା ଶ୍ରୀ ପ୍ରତାପ କେଶରୀ ଦେଓଙ୍କ ନେତୃତ୍ୱରେ ଗଣତନ୍ତ୍ର ପରିଷଦର ସଭ୍ୟମାନେ ମଧ୍ୟ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ଆକୁଣ୍ଠ ସମର୍ଥନ ଜଣାଇଥିଲେ । ୧୯୮୮ରେ ଡ଼ଃ କୋଠାରୀ ଯେତେବେଳେ ମୋର ଦିଲ୍ଲୀ ସରକାରୀ ବାସଭବନକୁ ଆସିଥିଲେ ମୁଁ ସମ୍ବଲପୁର ବାସୀଙ୍କ ପକ୍ଷରୁ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ପାଇଁ ତାଙ୍କୁ କୃତଜ୍ଞତା ଜଣାଇଥିଲି । କିଛିଦିନ ପରେ ମୁଁ ଯେତେବେଳେ ତାଙ୍କର ବିୟୋଗ ସମ୍ବାଦ ପାଇଲି ଅତ୍ୟନ୍ତ ମର୍ମାହତ ହୋଇଥିଲି ।

୧୯୬୨ରେ ଓଡ଼ିଶା ଓ ଅନ୍ୟାନ୍ୟ ପ୍ରଦେଶରେ ନିର୍ବାଚନ ଫଳାଫଳ କଂଗ୍ରେସ ପାଇଁ ପ୍ରତିକୂଳ ଥିଲା । କଂଗ୍ରେସ ଦେଶରେ ଅଧିକାଂଶ ଆସନ ହରାଇଥିଲା । ଓଡ଼ିଶା ବିଧାନସଭାକୁ ମୋ ସମେତ ମାତ୍ର ଆଠଜଣ ସଭ୍ୟ କଂଗ୍ରେସ ଦଳର ନିର୍ବାଚିତ ହୋଇଥିଲୁ । ବଲାଙ୍ଗିରର ଏକ ସୁସଭ୍ୟ ସ୍ୱଦେଶ ବତ୍ସଳ ପରିବାରର ଜଣେ ଉତ୍ସର୍ଗୀକୃତ କର୍ମୀ ଶ୍ରୀ ହରେକୃଷ୍ଣ ବିହିଦାର ୧୯୬୨ରେ ଅତାବିରକୁ ବି. ଡ଼ି. ଓ ହୋଇ ଆସିଥାଆନ୍ତି । ମତେ ବିରୋଧ କରୁଥିବା କଂଗ୍ରେସର କେତେକ ପ୍ରତିକ୍ରିୟାଶୀଳ ବ୍ୟକ୍ତି ଦିଲ୍ଲୀ ଯାଇ ମୋର ନିର୍ବାଚନ ମଣ୍ଡଳୀର କେତେକ ଅଞ୍ଚଳକୁ ଅଦଳ ବଦଳ କରିଦେଲେ । ମୋର ନିର୍ବାଚନ ମଣ୍ଡଳୀର ଧମା ଅଞ୍ଚଳ ବଦଳରେ ଅତାବିରା ଥାନାକୁ ମିଶାଇ ମୋର ପରାଜୟର ସ୍ୱପ୍ନ ଦେଖିବାକୁ ଲାଗିଲେ । ମୁଁ ଧମା ଅଞ୍ଚଳରେ ଅନେକ ଗୁଡ଼ିଏ କାମ କରିଥିଲି । କିନ୍ତୁ ଈଶ୍ୱରଙ୍କ ଇଚ୍ଛା ଭିନ୍ନ ଥିଲା ଏବଂ ମୁଁ ପୁଣି ସଂଖ୍ୟା ଗରିଷ୍ଠ ଭୋଟ ପାଇ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହେଲି । ୧୯୬୨-୬୨ରେ ଅତାବିରା ଥାନା ଅନ୍ତର୍ଗତ ଅଞ୍ଚଳରେ କେତେକ ଲୋକହିତକର କାମ କରିବାର ସମସ୍ତେ ଜାଣନ୍ତି । ଜାତୀୟ ରାଜପଥ (ବରଗଡ଼) ଉପରେ ଝାଉଁଯୋର ଉପରେ ପୋଲ ନିର୍ମାଣ କରାଇବା ମୋର ପ୍ରଥମ କଡ଼କାମ ଥିଲା । ଦ୍ୱିତୀୟ

ବନ୍ଧ କାମ ହେଲା କେନାଲ ରାସ୍ତାରେ ଲୋକଙ୍କ ଅବାଧ ଗମନା ଗମନ ।
ପୂର୍ବରୁ ତାହା ନିଷିଦ୍ଧ ଥିଲା । ଜାତୀୟ ରାଜପଥ ନମ୍ବର ଛଅରୁ ଟୋପ୍ ବନ୍ଦର, କୁକେଡ଼ଗ ବାଟଦେଇ ପାହାଡ଼ଶ୍ରୀଗିଡ଼ାକୁ ରାସ୍ତା ତିଆରି ହେଲା । ସମ୍ବଲପୁର ବରଗଡ଼ ରାଜପଥରୁ ଜଙ୍ଗଲ ମଧ୍ୟ ଦେଇ ଏକ ରାସ୍ତା ମଧ୍ୟ ପାହାଡ଼ଶ୍ରୀଗିଡ଼ାକୁ ନିର୍ମାଣ ହେଲା । ଜନସାଧାରଣଙ୍କ ଗମନାଗମନ ସୁବିଧା ବୃଦ୍ଧି ପାଇଲା । ୧୯୫୫-୫୬ ରୁ ମଞ୍ଜୁରୀ ପାଇଥିବା ଅତାବିରାର ପାଇପ ଜଳଯୋଗାଣ ଯୋଜନା ମୋର ନିର୍ଦ୍ଦେଶରେ ଛଅମାସ ମଧ୍ୟରେ ସମାପନ ହେଲା । ଏହା ଏକ ରେକର୍ଡ ଥିଲା । ଅତାବିରାରେ କେନାଲ ଆଯୁକ୍ତଙ୍କର କଲୋନୀଗୁଡ଼ିକ ପ୍ରସାରଣ କରାଗଲା । କେନାଲ ଉପରେ ପୋଲ ରାସ୍ତା ନିର୍ମାଣ ପାଇଁ ମୁଁ ମୋର ଜିପ୍‌ରେ ହ୍ୟୁମ୍ ପାଇପଗୁଡ଼ିକ ନେଇଯାଇ ଗାଁ ମାନଙ୍କରେ ଗୋଟିଏ ଦୁଇଟି କରି ଛାଡ଼ି ଆସୁଥିଲି । ଏଗୁଡ଼ିକ ଥିଲା ଜଳସେଚନ ଏବଂ ଜନସ୍ୱାସ୍ଥ୍ୟ ବିଭାଗର ହ୍ୟୁମ ପାଇପ । ଲୋକେ ଏଗୁଡ଼ିକୁ କେନାଲର ବିଭିନ୍ନ ସ୍ଥାନ ମାନଙ୍କରେ ପକାଇ ପୋଲ ରୂପେ ବ୍ୟବହାର କରୁଥିଲେ । ସମଗ୍ର ଅତାବିରା ଅଞ୍ଚଳରେ ସଡ଼କ ଯୋଗାଯୋଗ ବ୍ୟବସ୍ଥାର ଉନ୍ନତି ହେଲା ।

ଜନବହୁଳ ଭଲୁପାଲି ଗାଁ ପାଖ ନାଳ ଉପରେ ଏକ ଛୋଟ ପୋଲ ପାଇଁ ବହୁଦିନରୁ ଦାବି ହୋଇଆସୁଥିଲା । ସେଠାରେ ଏକ ପୋଲ ନିର୍ମାଣ କରାଗଲା । ଭେଡ଼େନ, ଧମା ଓ ସମ୍ବଲପୁର ଥାନା ଅଞ୍ଚଳରେ ବିଜୁଳି ଯୋଗାଣ ସମ୍ପ୍ରସାରିତ ହେଲା । ଧମା ଓ ଅତାବିରାର ସ୍କୁଲ ଗୁଡ଼ିକୁ ଅପ ଗ୍ରେଡ୍ କରାଯାଇଥିଲା । ସେହିପରି ବଲାଙ୍ଗୀର ଓ ଭବାନୀପାଟଣାର ଜଙ୍କଟ ପାଣିଯୁ ଜଳାଭାବ ଅଞ୍ଚଳକୁ ଜନସ୍ୱାସ୍ଥ୍ୟ ବିଭାଗ ତରଫରୁ ପାଇପ ପାଣି ଯୋଗାଇବା ପାଇଁ ନିର୍ଦ୍ଦେଶ ଦେଇଥିଲି ।

୧୯୬୬ ରେ ସ୍ୱାୟତ୍ତ ଶାସନ ବିଭାଗରେ ନାମ ବଦଳାଇ ନଗର ଉନ୍ନୟନ ବିଭାଗ କରାଯାଇଥିଲା । ଏହି ବିଭାଗରେ ଯେପରି ଦକ୍ଷ ଅଫିସର ମାନେ ରହନ୍ତି ସେଥିପାଇଁ ମୁଁ ଦୃଷ୍ଟି ଦେଇଥିଲି । ଶ୍ରୀ ଏ. ଏଲ୍ ନାୟାର, ଶ୍ରୀ ଭବକୃଷ୍ଣ ମହାନ୍ତି, ଶ୍ରୀ ଡ଼. ପି. ତ୍ରିପାଠୀ ଏବଂ ଶ୍ରୀ ୟୁ. ପି. ଅଗ୍ରୱାଲଙ୍କ ଭଳି ଦକ୍ଷ ଆଇ. ଏ ଏସ୍ ଅଫିସର ମାନଙ୍କୁ ମୁଁ ପାଇଥିଲି । ଆମେ ଭୁବନେଶ୍ୱରରେ ଏକ ଅଖିଳ ଭାରତୀୟ ସହର ଯୋଜନା ଅଧିକାରୀ ଓ ବିଶେଷଜ୍ଞମାନଙ୍କର ସମ୍ମିଳନୀର ଆୟୋଜନ କରିଥିଲୁ । ସେହିପରି ଓଡ଼ିଶାର

ସମସ୍ତ ପୌରପରିଷଦର ନଗରପାଳ ଏବଂ ନିର୍ବାହୀ ଅଧିକାରୀ ମାନଙ୍କର ଏକ ରାଜ୍ୟସ୍ତରୀୟ ସମ୍ମିଳନୀରେ ପୌରପରିଷଦ ଗୁଡ଼ିକୁ ଅଧିକ କ୍ଷମତା ପ୍ରଦାନ କରିବାକୁ ସୁପାରିଶ କରି ନୂତନ ଗୋଟା ଆଇନ ତିଆରି ହୋଇଥିଲା । ଏଥିପାଇଁ ଏକ ସ୍ୱାୟତ୍ତ ଶାସନ ବିଭାଗ କୋଠା ନିର୍ମାଣ କରାଯିବ ଯେଉଁଥିରେ ସମ୍ମିଳନୀ କକ୍ଷ ଓ ରହିବା ପାଇଁ କୋଠରୀ ରହିବ ବୋଲି ପ୍ରସ୍ତାବ ହେଲା । ମୋର ନିର୍ଦ୍ଦେଶରେ ନଗର ଉନ୍ନୟନ ବିଭାଗ ଏକ ଗୋଟା ମ୍ୟୁନିସିପାଲିଟି ଆଇନ ପ୍ରସ୍ତୁତ କଲେ ଯାହା ୧୯୬୭ରେ ବିଧାନ ସଭାରେ ଉପସ୍ଥାପନ କରାଗଲା । ଏହା ସମଗ୍ର ଦେଶର ଏକ ଉନ୍ନତ ଏବଂ ପ୍ରଗତିଶୀଳ ଆଇନଥିଲା । କିନ୍ତୁ, ସ୍ୱତନ୍ତ୍ର ଦଳର ମୁଖ୍ୟମନ୍ତ୍ରୀଙ୍କ ବିରୋଧ ଫଳରେ ଏହାକୁ ପ୍ରତ୍ୟାହାର କରିନିଆଯାଇଥିଲା ।

ଏହି ସମସ୍ତ କ୍ଷେତ୍ରରେ ଅମର ସଫଳତା ଦେଖି ଭାରତର ଏକ ବିଶିଷ୍ଟ ପତ୍ରିକା "ସିଭିଲ ଏଫେୟାର୍ସ" ମନ୍ତବ୍ୟ ଦେଇଥିଲା ଯେ, ଓଡ଼ିଶାର ସ୍ୱାୟତ୍ତ ଶାସନ ବିଭାଗ ମନ୍ତ୍ରୀ ଶ୍ରୀ ବନମାଳୀ ବାବୁଙ୍କ ପ୍ରଶଂସନୀୟ କାର୍ଯ୍ୟ । ଶ୍ରୀ ରାଜେନ୍ଦ୍ର ନାରାୟଣ ସିଂହଦେଓଙ୍କ ନେତୃତ୍ୱରେ ଗଠିତ ସ୍ୱତନ୍ତ୍ର ଓ କଂଗ୍ରେସ ମିଳିତ ମନ୍ତ୍ରୀ ମଣ୍ଡଳ ବିଲଟିକୁ ବିଧାନ ସଭାରେ ପାସ କରାଇ ଦେଲେ ନାହିଁ ।

ମନ୍ତ୍ରୀମଣ୍ଡଳରୁ ବାହାରି ଆସିଲା ପରେ ଓଡ଼ିଶାର ରାଜ୍ୟପାଳ, ମୁଁ ଏବଂ ସମ୍ବଲପୁର ବିଶ୍ୱବିଦ୍ୟାଳୟର ରାଜନୀତି ବିଜ୍ଞାନ ବିଭାଗର ପ୍ରଫେସର ଆଦିତ୍ୟ ପ୍ରସାଦ ପାଢ଼ୀ ସଙ୍ଗେ ମିଶି ସ୍ୱାୟତ୍ତ ଶାସନ ସଂସ୍ଥା ବା Institute of Local Self Government ଗଠନ କଲୁ । ଏହି ସଂସ୍ଥା ଆନୁକୂଲ୍ୟରେ ସମ୍ବଲପୁର ଠାରେ ଅନେକ ଥର ପୌର ପରିଷଦ ଚେୟାରମେନ (ନଗରପାଳ), ନିର୍ବାହୀ ଅଧିକାରୀ ଏବଂ ସହର ଯୋଜନା ଅଧିକାରୀ ମାନଙ୍କର ବାର୍ଷିକ ସମ୍ମିଳନୀ ଅନୁଷ୍ଠିତ ହୋଇଛି । ରାଜ୍ୟ ସରକାର ମଧ୍ୟ ଏଭଳି ସମ୍ମିଳନୀ କରିବାକୁ ଅନୁଦାନ ଯୋଗାଇ ଦେଲେ । ମୋ ସମୟରେ ବାରିଷ୍ଟର ଶ୍ରୀ ବୀରେନ ଦାସ, ଶ୍ରୀ ଅଭିମନ୍ୟୁ ମିଶ୍ର ଏବଂ ଶ୍ରୀ ବି. କେ. ପାତ୍ର ଭଳି ବିଖ୍ୟାତ ହାଇକୋର୍ଟ ବରିଷ୍ଠ ମାନେ ଆଇନ ବିଭାଗରେ ଥିଲେ ।

ସେହିପରି ମୋ ଅଧ୍ୟକ୍ଷତାରେ "ଓଡ଼ିଶା ପ୍ରାକୃତିକ ବିପର୍ଯ୍ୟୟ ରିଲିଫ ସୋସାଇଟି" ଗଠନ କରାଯାଇ ଘରପୋଡ଼ି, ମରୁଡ଼ି ଓ ଦୁର୍ଭିକ୍ଷ ପରିସ୍ଥିତିରେ ଗ୍ରାମବାସୀ ମାନଙ୍କୁ ରିଲିଫ ଯୋଗାଇ ଦିଆଯାଉଥିଲା । ଦେଶ

ସମ୍ମୁଖରେ ମୁଣ୍ଡ ଟେକୁଥିବା ଜାତୀୟ ଓ ପ୍ରାଦେଶିକ ସମସ୍ୟା ଗୁଡ଼ିକ ଉପସ୍ଥାପନା କରିବା ଉଦ୍ଦେଶ୍ୟରେ ମୋ ଅଧ୍ୟକ୍ଷତାରେ ଏକ ନାଗରିକ ମଞ୍ଚ ମଧ୍ୟ ଗଠନ କରାଯାଇଛି ।

୧୯୭୭ର ବିଧାନସଭା ନିର୍ବାଚନରେ କଂଗ୍ରେସ ଠାରୁ ପରାଜିତ ହେଲା ପରେ ସ୍ୱତନ୍ତ୍ର ଦଳର ପ୍ରାର୍ଥୀ ମୋ ବିରୁଦ୍ଧରେ ଏକ ନିର୍ବାଚନ ମକଦ୍ଦମା ଦାୟର କଲେ ଏବଂ ନିମ୍ନୋକ୍ତ କାରଣରୁ ନିର୍ବାଚନକୁ ନାକଚ ଘୋଷଣା କରିବାକୁ ଦାବି କରିଥିଲେ—

୧- ଜିଲ୍ଲାରେ, ନିର୍ବାଚନ ମଣ୍ଡଳୀରେ ଅଡାବିରା ଓ ଅନ୍ୟାନ୍ୟ ଅଞ୍ଚଳରେ ପାଇପ ଜଳ ଯୋଗାଣ

୨- ଜିଲ୍ଲାର ବିଭିନ୍ନ ଗ୍ରାମରେ ବିଦ୍ୟୁତ୍ କରଣ

୩- ସମ୍ବଲପୁର ଜିଲ୍ଲାପାଳଙ୍କ ବାହୁଡ଼ା ରଥଯାତ୍ରା ଅନ୍ୟାୟ ଭାବରେ ବନ୍ଦ ଓ ମୋର ହସ୍ତକ୍ଷେପ

୪- ଜିଲ୍ଲା ପୁଲିସ ଓ ପ୍ରଶାସନରେ ହସ୍ତକ୍ଷେପ

୫- ମରୁଡ଼ି ପ୍ରପୀଡ଼ିତ ଅଞ୍ଚଳରେ ରିଲିଫ ଯୋଗାଣ, ଭୁଲୁଣ୍ଡି ଗ୍ରାମରେ ଓ ଅନ୍ୟାନ୍ୟ ସ୍ଥାନରେ କେନାଲଖନନ ଏବଂ ମୋଦ୍ୱାରା ଜିଲ୍ଲାରେ କରାଯାଇଥିବା ଅନ୍ୟାନ୍ୟ ଉନ୍ନୟନ ମୂଳକ କାର୍ଯ୍ୟ ।

ଜଣେ ଅଧିକାରୀ (ପ୍ରଶାସନିକ ବୃହସ୍ପତି) ଙ୍କ ଶିକାର ହେଲି । ସେ, ବିବାହିତ ନଥିଲେ । ରାତିରେ ମହିଳା ମହାବିଦ୍ୟାଳୟ ଛାତ୍ରୀବାସକୁ ତାଙ୍କର ଯାଉଥିବା ଅଭିଯୋଗ ହେଲା । ମୁଁ, ତାଙ୍କୁ ଡକେଇ ମୋର ଆଶଙ୍କା ବିଷୟ ଜଣାଇଲି, ଏଥିପ୍ରତି ସତର୍କ ରହିବାକୁ ବିନମ୍ର ଭାବରେ କହିଲି ।

ବାର୍ଷିକ ରଥଯାତ୍ରା ବନ୍ଦ କରିବା ଜିଲ୍ଲାପାଳଙ୍କ ଆଦେଶ ଠିକ ନୁହେଁ କହି ମୁଁ, ଜିଲ୍ଲାପାଳ, ଡ଼. ଆଇ. ଜି ଏବଂ ଏସ୍. ପି କୁ ଖାଲିପାଦରେ ରଥ ଟାଣିବାକୁ କହିଥିଲି ।

ଫଳତଃ ଜିଲ୍ଲାପାଳ ଆଦେଶ ପରିବର୍ତ୍ତନ କଲେ । ପରେ ଉଚ୍ଚ ନ୍ୟାୟାଳୟରେ ଚାଲୁଥିବା ନିର୍ବାଚନ ମୋକଦ୍ଦମାରେ ମୋ ବିରୁଦ୍ଧରେ ସାକ୍ଷ୍ୟ ପ୍ରମାଣ କଲେ ।

ମାନ୍ୟବର ଉଚ୍ଚ ନ୍ୟାୟାଳୟ ହାଇକୋର୍ଟ କୌଣସି ସାକ୍ଷ୍ୟକୁ ଗ୍ରହଣ ନ କରି ନିର୍ବାଚନକୁ ବୈଧ ଘୋଷଣା କଲେ ।

୧୯୬୭ରେ ସେମାନଙ୍କ ପ୍ରାର୍ଥୀ ବିଜୟୀ କରି ନ ପାରିବା କଥାକୁ ସ୍ୱତନ୍ତ୍ର ଦଳ ଅନ୍ୟ ହିସାବରେ ନେଲେ । ମୋତେ, କେତେକ ମିଥ୍ୟା ମାମଲାରେ ଜଡ଼ିତ କରିବା ଲାଗି ବିଚାରପତି ଏଚ୍. ଆର୍. ଖାନ୍ନା କମିଶନକୁ ପ୍ରବର୍ତ୍ତା ଗଲା । ସେ, ମୋର ସଚ୍ଚୋଟତା ଜାଣି ସେମାନଙ୍କ ଅନୁରୋଧକୁ ଗ୍ରହଣ କଲେନାହିଁ । ଯେକୌଣସି ପ୍ରକାରେ ମୋ ବିରୁଦ୍ଧରେ କିଛି ଅଭିଯୋଗ ଆଣି ମୋର ମନ୍ତ୍ରୀତ୍ୱ କାଳର କାର୍ଯ୍ୟାବଳୀକୁ ସବୁ ପ୍ରକାରେ ସମୀକ୍ଷା କରି ମୋର ସଚ୍ଚୋଟତା ଉପରେ ଅନ୍ତତଃ ସନ୍ଦେହ ସୃଷ୍ଟି ଉଦ୍ଦେଶ୍ୟ ସୃଷ୍ଟି ହେଲା । ସମ୍ବଲପୁରର ପ୍ରବୀଣ ଆଇନଜୀବୀ, ପୂର୍ବତନ ଜଜ୍ ଶ୍ରୀ ଶକ୍ତିଭୂଷଣ ଶତପଥୀଙ୍କୁ ମୋର ଆଚରଣ ତଦନ୍ତ କରିବାକୁ ନିର୍ଦ୍ଦେଶ ହେଲା । ସେ, ତଦନ୍ତ କଲେ । ମୋ ବିରୁଦ୍ଧରେ ଅନୈତିକ କାର୍ଯ୍ୟ ବା କାର୍ଯ୍ୟକଳାପ ମିଳିଲା ନାହିଁ । ଶ୍ରୀ ଶତପଥୀ ଏଥିରୁ ଇସ୍ତଫା ଦେଇ ଦେଲେ । ସେ ମତେ କହିଲେ ଯେ, ମତେ ଜଡ଼ିତ କରିବା ଭଳି ଗୋଟିଏ ହେଲେ ଘଟଣା ସେ ପାଇନଥିଲେ । ସେ, ମନ୍ତ୍ରୀ ଭାବରେ ମୋର ସାଧୁତା ଓ ସଚ୍ଚୋଟତାର ଉଚ୍ଚ ପ୍ରଶଂସା କଲେ ।

୧୯୬୮ରେ କଂଗ୍ରେସରେ ବିଭାଜନ ହେଲା । ଏବଂ ଓଡ଼ିଶାରେ ଆମେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କୁ ସମର୍ଥନ କଲୁ । ମୁଁ ମଧ୍ୟ ଅନ୍ୟମାନଙ୍କ ପରି ଥିଲି ଇନ୍ଦିରା ଗାନ୍ଧୀଙ୍କ ନିକଟତମ ବ୍ୟକ୍ତି । ସେ ମତେ ଓଡ଼ିଶାର ମୁଖ୍ୟମନ୍ତ୍ରୀ ଭାବରେ ଦେଖିବାକୁ ଚାହାନ୍ତି ବୋଲି କମଳାପତି ତ୍ରିପାଠୀ, ଯଶପାଲ କପୁର, ହେମବତୀନନ୍ଦନ ବହୁଗୁଣା ତତ୍କାଳୀନ କଂଗ୍ରେସ (ଇ) ସାଧାରଣ ସମ୍ପାଦକ, ଅର୍ଥମନ୍ତ୍ରୀ ଶ୍ରୀ ସୁବ୍ରମଣ୍ୟମ୍ ଓ ଶ୍ରୀ ସିଦ୍ଧାର୍ଥ ଶଙ୍କର ରାୟଙ୍କ ଉପସ୍ଥିତିରେ ଇଚ୍ଛା ପ୍ରକାଶ କଲେ । ମୋ ବ୍ୟତୀତ ଅନ୍ୟ କାହାକୁ ମୁଖ୍ୟମନ୍ତ୍ରୀ କରି ଓଡ଼ିଶାକୁ ନ ପଠାଇବା ଲାଗି ସେମାନେ ମଧ୍ୟ ଶ୍ରୀମତୀ ଗାନ୍ଧୀଙ୍କୁ ଅନୁରୋଧ କରିଥିଲେ ।

ଶ୍ରୀ ସୂପକାର ରାଜ୍ୟ ଓ ଜାତୀୟ ରାଜନୀତିରେ ମହତ୍ତ୍ୱର ସ୍ଥାନ ଅଧିକାର କରିଥାଆନ୍ତି । ସେ ସଞ୍ଜୀବ ରେଡ଼ଡ଼ିଙ୍କ ଗୋଷ୍ଠିରେ ରହିଲେ । ଏଥିରେ ମୁଁ ସହମତ ହୋଇ ନଥିଲି । ଏହି ଗୋଷ୍ଠି ସଫଳ ଆଡ଼କୁ ଅଗ୍ରସର ହେଲେ ନାହିଁ । ରାଷ୍ଟ୍ରପତି ନିର୍ବାଚନରେ ଶ୍ରୀ ଭି. ଭି. ଗିରି ନିର୍ବାଚିତ ହେଲେ । ପାର୍ଲିଆମେଣ୍ଟ ଭାଙ୍ଗି ଦିଆଗଲା ଓ ୧୯୭୧ରେ ନିର୍ବାଚନ ହେବବୋଲି

ଘୋଷଣା କରାଗଲା । ଦଳର କେତେଜଣ ସଭ୍ୟ ମୋ ବିରୁଦ୍ଧରେ ଚକ୍ରାନ୍ତର ଷଡ଼ଯନ୍ତ୍ରରେ ଲିପ୍ତ ଥାଆନ୍ତି । ଏମାନେ ପାର୍ଲିଆମେଣ୍ଟକୁ ପଠାଇ, ଦୂରରେ ରଖି ସେମାନେ ନିଜର ଉଦ୍ଦେଶ୍ୟ ସାଧନ କରିବାକୁ ବ୍ୟଗ୍ର ଥାଆନ୍ତି । ମତେ ପାର୍ଲିଆମେଣ୍ଟକୁ ନ ନେବା ଲାଗି ଶ୍ରୀମତୀ ଗାନ୍ଧିଙ୍କୁ ବହୁବାର ଅନୁରୋଧ କଲି । ତାଙ୍କୁ କହିଥିଲି ଯେ, ମୁଁ ଓଡ଼ିଶାରେ ଜଣେ କେବିନେଟ ମନ୍ତ୍ରୀ ଥିବାରୁ ରାଜ୍ୟର ନେତା ପଦ ଆପେ ମୋ ପାଖକୁ ଆସିଯିବ ।

ପାର୍ଲିଆମେଣ୍ଟ ନିର୍ବାଚନରେ ପ୍ରାର୍ଥୀ ହେବାକୁ ମତେ ବାଧ୍ୟ କରାଗଲା । ତେଣୁ ୧୯୭୧ରେ ମୁଁ ତାଙ୍କ ସଙ୍ଗେ ଲୋକସଭା ନିର୍ବାଚନରେ ଅନିଚ୍ଛା ସତ୍ତ୍ୱେ ପ୍ରାର୍ଥୀ ହେଲି । ସମ୍ବଲପୁର ଲୋକସଭା ନିର୍ବାଚନ ମଣ୍ଡଳୀରୁ ସମସ୍ତଙ୍କରେ ମୋ ଜଣେ ନିକଟ ସମ୍ପର୍କୀୟ ବିରୋଧୀଦଳର ପ୍ରାର୍ଥୀ ହେଲେ । ଆମ ଦଳରେ ଥିବା ମୋର ବିରୋଧୀମାନଙ୍କ ପ୍ରଚେଷ୍ଟା ସତ୍ତ୍ୱେ ମୋର ଏବଂ ଦଳର ଭୋଟ ଅକ୍ଷୁର୍ଣ୍ଣ ରହିଲା । ଏହି ନିର୍ବାଚନରେ ମୁଁ ୮୦ ହଜାର ଅଧିକ ଭୋଟ ପାଇ ନିର୍ବାଚିତ ହେଲି ।

ନିର୍ବାଚନ ପରେ ଶ୍ରୀ ହୂଙ୍କାର ପୁଣି କଂଗ୍ରେସରେ ଯୋଗ ଦେବାକୁ ଆବେଦନ ଓ ଅନୁରୋଧମତେ ମୁଁ ପ୍ରଧାନମନ୍ତ୍ରୀଙ୍କ ପାଖରେ ତାଙ୍କର କଂଗ୍ରେସରେ ଯୋଗଦାନ କରିବା ଅଭିପ୍ରାୟ ବିଷୟ ଆଲୋଚନା କଲି । ଶ୍ରୀମତୀ ଇନ୍ଦିରା ଗାନ୍ଧି ଅଭିମାନ ସତ୍ତ୍ୱେ ତାଙ୍କୁ ଗ୍ରହଣ କରିବା ଲାଗି ସମ୍ମତ ହେଲେ । ତାଙ୍କୁ କିଛି ଗୋଟିଏ ପଦରେ ସ୍ଥାପିତ କରିବାକୁ ମଧ୍ୟ ଅନୁରୋଧ କରାଗଲା । ପ୍ରଧାନମନ୍ତ୍ରୀ ତାଙ୍କୁ ଗ୍ରହଣ କରି ଭାଷା କମିଶନର ସଭ୍ୟ ପଦରେ ନିଯୁକ୍ତ ତାଙ୍କୁ ଦେବାପାଇଁ ଶ୍ରୀ ଅର୍. କେ. ଧାବନଙ୍କୁ ନିର୍ଦ୍ଦେଶ ଦେଲେ । ଶ୍ରୀ ସୂତ୍ରଧର ମଧ୍ୟ ଜଣେ ଭାଷା ସାହିତ୍ୟିକ ଥିଲେ ।

୧୯୭୧ ର ନିର୍ବାଚନ ପରେ ଓଡ଼ିଶାରେ କାହାକୁ ମୁଖ୍ୟମନ୍ତ୍ରୀ କରାଯିବ ସେ ପ୍ରସଙ୍ଗ ମୁଣ୍ଡ ଟେକିଲା । ଏବଂ ପୂର୍ବ ପାରାରେ ବର୍ଣ୍ଣିତ ଭଦ୍ର ବ୍ୟକ୍ତି ମାନେ ପୁଣି ମୋର ନାମ ସୁପାରିଶ କଲେ । କିନ୍ତୁ, କେତେକଙ୍କ ହସ୍ତକ୍ଷେପ ଫଳରେ ମୁଁ ଜଣେ ଭୂସ୍ୱାମୀ ଶ୍ରେଣୀର ବ୍ୟକ୍ତି ଭାବରେ ଚିହ୍ନିତ ହେଲି । କେତେକ ବିଶିଷ୍ଟ ବିରୋଧୀ ନେତା ଅନ୍ୟ କାହାକୁ ମନୋନୀତ କରିବାଲାଗି ଶ୍ରୀମତୀଗାନ୍ଧିଙ୍କୁ ଅନୁରୋଧ କରିଥିବା ଶୁଣାଗଲା । ସେ ପ୍ରସ୍ତାବ ତାଙ୍କ ଅନିଚ୍ଛାସତ୍ତ୍ୱେ ଗୃହୀତ ହେଲା । ଏହାକୁ ମୁଁ ସ୍ୱାଗତ ଜଣାଇଥିଲି ।

ପ୍ରଜାତନ୍ତ୍ର ଦୈନିକର ବିଖ୍ୟାତ ସମ୍ପାଦକ ଶ୍ରୀ ପ୍ରଦ୍ୟୁମ୍ନ ବଳ ଅନେକ ବର୍ଷଧରି ରାଜ୍ୟ ଯୁବକଂଗ୍ରେସର ସଭାପତି ରହିଥିଲେ । ସେ ଏକ ସମ୍ଭ୍ରାନ୍ତ ସମ୍ପନ୍ନ ପରିବାରର ସନ୍ତାନ ଏବଂ ପଲ୍ଲୀକବି ନନ୍ଦକିଶୋର ବଳଙ୍କର ପୌତ୍ର । ଶ୍ରୀ ବଳ ଜଣେ ଉତ୍ତମ ଚରିତ୍ରର ବ୍ୟକ୍ତି । କିନ୍ତୁ, ବର୍ଷ ବର୍ଷ ଧରି କାମ କରି ଆସିଥିବା ସତ୍ତ୍ୱେ କଟକ ଜିଲ୍ଲାର ଲୋକସଭା ପାଇଁ ପ୍ରାର୍ଥୀ କରାଗଲାନାହିଁ । କଂଗ୍ରେସ ସମ୍ମିଳନୀରେ ଆମେ ଏ ନିଷ୍ପତ୍ତିର ବିରୋଧ କରିଥିଲୁ ବୋଲି ମୋତେ, ଶ୍ରୀ ଶ୍ୟାମ ମହାପାତ୍ର ଏବଂ ଶ୍ରୀ ବଳଙ୍କୁ ପ୍ରଦେଶ କଂଗ୍ରେସ କମିଟିର ଏକ କ୍ଷମତାଶାଳୀ ଗୋଷ୍ଠୀ ବିରୋଧ କରିଚାଲିଲେ । ଶ୍ରୀ ଶ୍ୟାମ ମହାପାତ୍ରଙ୍କୁ ହାଇରାଣ କରିବା ସହିତ ମୋ ବିରୁଦ୍ଧରେ କାନକୁହା ଅଭିଯାନ ଆରମ୍ଭ କରି ତାକୁ ପ୍ରଧାନମନ୍ତ୍ରୀଙ୍କ ନିକଟରେ ପହଞ୍ଚାଇବା ବ୍ୟବସ୍ଥା ମଧ୍ୟ କରାଗଲା । ଏ ସମସ୍ତ କାରବାରରେ ବିରକ୍ତ ହୋଇ ପ୍ରଧାନମନ୍ତ୍ରୀ ମୋ ପାଖରୁ ବିଶ୍ୱାସ ହରାଇଥିବା ଦୃଷ୍ଟିରୁ ଲୋକସଭାରୁ ମୋର ଇସ୍ତଫା ଗ୍ରହଣ କରାଯାଉ ବୋଲି ପ୍ରଧାନମନ୍ତ୍ରୀଙ୍କ ପାଖକୁ ଲେଖି ପଠାଇଲି । କିନ୍ତୁ, ପ୍ରଧାନମନ୍ତ୍ରୀ ମୋ ଇସ୍ତଫା ପତ୍ରକୁ ଚିରିଦେଇ କହିଲେ, ଜୀବନରେ ଏଭଳି ଘଟଣା ପ୍ରାୟ ଘଟିଥାଏ ଏବଂ ଯେଉଁ ବ୍ୟକ୍ତି ମାନେ ଏହି ଷଡ଼ଯନ୍ତ୍ର କରିଛନ୍ତି ସେମାନଙ୍କୁ ଚିହ୍ନୋଟ କରିସାରିଲେଣି ତେଣୁ ଏଥିପ୍ରତି ଗୁରୁତ୍ୱ ନ ଦେବା ଲାଗି ପରାମର୍ଶ ଦେଲେ ।

୮୦  ୧୯୬୧ରେ ରେଲୱେ କମିଟିର ସଦସ୍ୟ ରୂପେ ମୁଁ ସମ୍ବଲପୁର ତାଳଚେର ରେଳପଥ ବିଷୟ ଉତ୍ଥାପନ କଲି । କିନ୍ତୁ, ରେଲୱେ ବୋର୍ଡ଼ ଏହି ପ୍ରସ୍ତାବ ସମ୍ପର୍କରେ ଅଜ୍ଞତା ପ୍ରକାଶ କଲେ । ୧୯୬୨ରେ ରେଲୱେ କମିଟିର ବାଙ୍ଗାଲୋର ଅଧିବେଶନରେ ମୁଁ ସମ୍ବଲପୁର—ତାଳଚେର ରେଲପଥ ସଂକ୍ରାନ୍ତ ମୁଦ୍ରିତ ପ୍ରୋଜେକ୍ଟ (ପ୍ରକଳ୍ପ) ରିପୋର୍ଟ ଏହାର ଅଧ୍ୟକ୍ଷ ତଥା ରେଳବାଇ ମନ୍ତ୍ରୀ ଶ୍ରୀ କମଳା ପତି ତ୍ରିପାଠୀଙ୍କ ପାଖରେ ଆଗତ କଲି । ରିପୋର୍ଟଟି ଦେଖି ରେଲୱେ ବୋର୍ଡ଼ ଏସମ୍ପର୍କରେ ଅଜ୍ଞ ଥିବାରୁ ସେ ଅସନ୍ତୋଷ ପ୍ରକାଶ କଲେ ଏବଂ ୧୯୪୭ର ପ୍ରସ୍ତୁତ ରିପୋର୍ଟକୁ ନୂତନ ଭାବରେ ପ୍ରସ୍ତୁତ କରିବା ଲାଗି ଆଦେଶ ଦେଲେ ।

ଓଡ଼ିଶାର ରାଜ୍ୟପାଳ ସାର ହଥର୍ଣ୍ଣଲୁଇସଙ୍କ ସମୟରେ ୧୯୪୪ ରୁ ୧୯୪୬ ମଧ୍ୟରେ ତିନୋଟି ଯୋଜନା ପ୍ରସ୍ତୁତ କରାଯାଇଥିଲା । ୧ ହୀରାକୁଦ ବନ୍ଧ ଯୋଜନା, ୨ ସମ୍ବଲପୁର କଲେଜ ଏବଂ ୩ ସମ୍ବଲପୁର— ତାଳଚେର ସଂଯୋଗ ରେଳପଥ । ୧୯୪୬ରେ ସେ ହୀରାକୁଦ ବନ୍ଧ ଯୋଜନା ଏବଂ

ଗୁଣ୍ଡେରପୁର ଠାରେ ସମ୍ବଲପୁର କଲେଜ କୋଠା ନିର୍ମାଣ ପାଇଁ ଭିତ୍ତି-ପ୍ରସ୍ତର ସ୍ଥାପନ କଲେ । ସେ ସମ୍ବଲପୁର— ତାଲଚେର ରେଲପଥର ମଧ୍ୟ ଭିତ୍ତି ପ୍ରସ୍ତର ସ୍ଥାପନ କରିବାର ଥିଲା । ୧୯୪୮ ରେ ଭାରତରେ ସ୍ୱାଧୀନତା କାର୍ଯ୍ୟକାରୀ ହେବ ବୋଲି ଘୋଷଣା ହୋଇ ସାରିଥାଏ । କିନ୍ତୁ, ଚର୍ଚ୍ଚିଲଙ୍କ ପରାଜୟ ଏବଂ ସି. ଆର୍. ଅଟଲିଙ୍କ ପ୍ରଧାନମନ୍ତ୍ରୀ ନିଯୁକ୍ତି ତାହା ୧୯୪୮ ରୁ ୧୯୪୭କୁ ଘୁଞ୍ଚାଇ ଅଣାଗଲା । ସେହି ଅନୁସାରେ ୧୯୪୬ ରୁ ୧୯୪୭ ର ଦର୍ଶାର୍ଦ୍ଧ ମଧ୍ୟରେ ଓଡ଼ିଶାର ରାଜ୍ୟପାଳଙ୍କ ସମେତ ସମସ୍ତ ଇଂରେଜ ଅଫିସର ଭାରତ ଛାଡ଼ିଲେ । ତେଣୁ, ସମ୍ବଲପୁର – ତାଲଚେର ରେଲପଥ ପ୍ରକଳ୍ପ ଅନିର୍ଦ୍ଦିଷ୍ଟ କାଳ ପାଇଁ ମୂଳତବି ରହିଲା । ସୁଭାଷ ଚନ୍ଦ୍ର ବୋଷଙ୍କ ବଡ଼ଭାଇ ଶରତ ଚନ୍ଦ୍ର ବୋଷ ରେଲବାଇ ମନ୍ତ୍ରଣାଳୟର ଦାୟିତ୍ୱରେ ଥାଆନ୍ତି । ସେ ସମ୍ବଲପୁରର ଅନେକ ବୁଦ୍ଧିଜୀବୀଙ୍କ ସହପାଠୀ ଥିଲେ । ସେ ସମସ୍ତଙ୍କୁ କଲିକତା ଡକାଇ ସମ୍ବଲପୁର — ତାଲଚେର ରେଲପଥ ସମ୍ବନ୍ଧୀୟ ସମସ୍ତ ଫାଇଲ ଦେଖାଇଲେ । ଫାଇଲଟି ଏବେ ମଧ୍ୟ ରହିଛି । ଫାଇଲରୁ ସ୍ପଷ୍ଟ ଜଣାପଡ଼େ ଯେ ଶରତ ଚନ୍ଦ୍ର ବୋଷ ଯେତେବେଳେ ପ୍ରଧାନମନ୍ତ୍ରୀଙ୍କୁ ଏହି ରେଲପଥର ଭିତ୍ତି ପ୍ରସ୍ତର ସ୍ଥାପନ ପାଇଁ ସୁପାରିଶ କଲେ, ପ୍ରଧାନମନ୍ତ୍ରୀ ଏହି ପ୍ରସ୍ତାବକୁ ଗ୍ରହଣ କଲେନାହିଁ ଓ ଯୋଜନାକୁ ଅନିର୍ଦ୍ଦିଷ୍ଟ କାଳ ପାଇଁ ରଦ୍ଦ କରିଦେଲେ । ଯୋଜନା ପାଇଁ ଗଚ୍ଛିତ ଅଢ଼େଇ କୋଟି ଟଙ୍କାକୁ ଗୁଜୁରାଟ ପ୍ରଦେଶକୁ ଦେବାକୁ ଆଦେଶ ଦେଲେ । ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଏହିପରି ଭାବରେ ସ୍ୱାଧୀନତା ପ୍ରାପ୍ତିର ଅବ୍ୟବହିତ ପରେ ଓଡ଼ିଶାକୁ ପ୍ରଥମ ପ୍ରହାର ଦେଲେ ।

୧୯୮୧ରେ ଦକ୍ଷିଣ ପଶ୍ଚିମ ରେଲବାଇର ଶ୍ରୀ ଏମ୍. କେ. ଖୋସଲା ଜେନେରାଲ ମେନେଜର ଏବଂ ଚକ୍ରଧରପୁର ଡିଭିଜନର ଡିଭିଜନାଲ ମେନେଜର ଶ୍ରୀ ଟି.ପି ଦାସ ହେଲେ । ୧୯୮୨ ରେ ମୁଁ ବମ୍ବେରୁ ଫୋନ କରି ଶ୍ରୀ ଖୋସଲାଙ୍କୁ କଲିକତାର ଗାର୍ଡ଼େନରିଚ୍ ଅଫିସରେ ଦେଖାକରିବି ବୋଲି ଜଣାଇଲି । ମୁଁ ସେଠିକୁ ଯାଇ ଦେଖିଲି ଯେ, ଏକ ସଭାରେ ଯୋଗ ଦେବା ପାଇଁ ଦକ୍ଷିଣ ପୂର୍ବ ରେଲବାଇର ପ୍ରାୟ ତିରିଶ ଜଣ ବରିଷ୍ଠ ମୁଖ୍ୟ ଡାକରା ପାଇ ଆସି ଥାଆନ୍ତି । ଶ୍ରୀ ଖୋସଲା ମୋତେ ସ୍ୱାଗତ ଜଣାଇ ବସାଇଲା ପରେ ମୁଁ କେଉଁ ବିଶେଷ କାର୍ଯ୍ୟପାଇଁ ଆସିଛି ବୋଲି ଜାଣିବାକୁ ଚାହିଁଲେ । ୧୮୯୦ ରେ ଯେତେବେଳେ ପ୍ରଥମ କରି କଲିକତା – ବମ୍ବେ ରେଲପଥ ଝାରସୁଗୁଡ଼ା ବାଟ ହୋଇଗଲା ସମ୍ବଲପୁର ସେହିଦିନ ଠାରୁ

ଉପେକ୍ଷିତ ହୋଇ ଆସିଛି ବୋଲି ମୁଁ ତାଙ୍କୁ କହିଲି । ରେଲବାଇ ଦ୍ୱାରା କୌଣସି କାର୍ଯ୍ୟ କରାଯାଇ ନାହିଁ । ସଙ୍ଗେ ସଙ୍ଗେ ଶ୍ରୀ ଖୋସଲା ମୋ ସହିତ ଏକମତ ହୋଇ କହିଲେ, ସେ ଏଣିକି ରେଲବାଇ ପ୍ରାଧାନ୍ୟ ଦେଇ ସମ୍ବଲପୁରର ସମସ୍ୟା ବିଚାରକୁ ନେବ । ସେ ତାଙ୍କର କଥା ରଖିଲେ ଏବଂ ପ୍ରଥମ ପର୍ଯ୍ୟାୟରେ ହାଉଁଡ଼ା— ରାଉରକେଲା ଏକ୍ସପ୍ରେସକୁ ସମ୍ବଲପୁର ପର୍ଯ୍ୟନ୍ତ ସମ୍ପ୍ରସାରଣ କଲେ । ପରେ ସମ୍ବଲପୁର ରେଲବାଇ ଡ଼ିଭିଜନାଲ ଅଫିସ ଏବଂ ସମ୍ବଲପୁର ତାଲଚେର ରେଳପଥର ଭିତ୍ତି ରାଜୀବ ଗାନ୍ଧିଙ୍କ ଦ୍ୱାରା ସ୍ଥାପନ କରାଗଲା । ଏହି ଭିତ୍ତି ପ୍ରସ୍ତର ସ୍ଥାପନ ଉତ୍ସବରେ ରେଲ୍‌ବାଇ ମନ୍ତ୍ରୀ ମାଧବ ସିନ୍ଧିଆ ମଧ୍ୟ ଯୋଗଦେଇଥିଲେ । ଏହା ପୂର୍ବରୁ ମୁଁ ସମ୍ବଲପୁର ଠାରେ ଡ଼ିଭିଜନ ଅଫିସ ଖୋଲିବା ପାଇଁ ଅନେକ ପରିଶ୍ରମ କରି ରେଳବାଇ ସଂସ୍କାର କମିଟିର ଅଧ୍ୟକ୍ଷ ଡ଼କ୍ଟର ମୁଖାର୍ଜୀଙ୍କ ସଙ୍ଗେ ବାରମ୍ବାର ଆଲୋଚନା କରି ସମ୍ବଲପୁରକୁ ପ୍ରଥମ ସ୍ଥାନରେ ରଖିବା ପାଇଁ ପ୍ରବର୍ତ୍ତାଇଥିଲି ।

୧୯୪୪ରେ ସମ୍ବଲପୁର ଠାରେ ଏକ ଦ୍ୱିତୀୟ ଗ୍ରେଡ଼ କଲେଜ (ବର୍ତ୍ତମାନ ଗଙ୍ଗାଧର ମେହେର କଲେଜ) ଏକ ହାଇସ୍କୁଲ ପାଇଁ ଉଦ୍ଦିଷ୍ଟ ବର୍ତ୍ତମାନର କଲେଜ କୋଠାରେ ଖୋଲିବାକୁ ସ୍ଥିର ହେଲା, ସେତେବେଳେ ସ୍ଥାନ ନିରୂପଣକାରୀ ସଭ୍ୟ ମଣ୍ଡଳୀକୁ ଅସମ୍ମତି ପତ୍ର ଦେଇ କଲେଜଲାଗି ଗୁଣ୍ଡେରପୁରକୁ ନିରୂପଣ କରିବାକୁ ଅନୁରୋଧ କରିଥିଲି । ରାଜ୍ୟପାଳ ସାର୍ ଲୁଇସ୍ ମଧ୍ୟ ସେହିଠାରେ ଭିତ୍ତିପ୍ରସ୍ତର ସ୍ଥାପନ କରିଥିଲେ । କେତେକ ସଙ୍କୀର୍ଣ୍ଣ ଦୃଷ୍ଟିକୋଣ ସମ୍ପନ୍ନ ଦୂରଦୃଷ୍ଟିବିହୀନ ବ୍ୟକ୍ତି ଏହି ପ୍ରସ୍ତାବର ବିରୋଧ କଲେ । ଏବେ କିନ୍ତୁ ଗଙ୍ଗାଧର ମେହେର କଲେଜ ସମ୍ପ୍ରସାରଣ ପାଇଁ ଜାଗା ଟିକେ ନାହିଁ । ଅଥଚ ଗୁଣ୍ଡେରପୁର ଠାରେ ଶହେ ଏକର୍ ପରିମିତ ଜମି ଥିଲା । ସେହିପରି ୧୯୬୮ ରେ ସମ୍ବଲପୁର ବିଶ୍ୱବିଦ୍ୟାଳୟର ସ୍ଥାନ ବୁର୍ଲା ଠାରେ ନିରୂପଣ କଲାବେଳେ ବିରୋଧ କରିଥିଲି । ମୁଁ, ରାଜ୍ୟ-ପାଳ ଡ଼: ଖୋସଲା ଏବଂ ଅଧ୍ୟାପକ ପଟେଲ ସମ୍ବଲପୁର ଜିଲ୍ଲାପାଳ ବଙ୍ଗଳାର ବିପରୀତ ଦିଗରେ ମହାନଦୀ କୂଳରେ ହଜାରେ ଏକର୍ ପରିମିତ ଜମି ଥିବା ସ୍ଥାନ ନିରୂପଣ କରିଥିଲୁ । ପୁଣିଥରେ ସେହି ପ୍ରତିକ୍ରିୟାଶୀଳ ଗୋଷ୍ଠି ଯେଉଁମାନଙ୍କ ଭିତରୁ ଅଧିକାଂଶଙ୍କ ବୁର୍ଲାରେ ନିଜ ଜମିଥିବା କାରଣରୁ ବୁର୍ଲାକୁ ବାଛିଲେ । ଏବଂ ଆମ ମାନଙ୍କୁ ରାଜି କରାଇବା ପାଇଁ ଉପ-ରାଷ୍ଟ୍ରପତି ଜାକିର ହୁସେନଙ୍କୁ ଡ଼ାକି ଆଣିଲେ ।

୧୯୭୨ରେ ଆମେ ଟ୍ରଷ୍ଟ କମିଟିର ସଭ୍ୟମାନଙ୍କ ଉଦ୍ୟମରେ ଟ୍ରଷ୍ଟ ଫଣ୍ଡ କଲେଜ ଖୋଲିଲୁ । ସ୍ଥାନ ନିରୂପଣ କମିଟିକୁ ଧନୁପାଲ୍ଲୀଠାରେ ଏହି କଲେଜ ନିର୍ମାଣ ପାଇଁ ପ୍ରବର୍ତ୍ତାଇବାରୁ ଏବେ ଧନୁପାଲ୍ଲୀ ଠାରେ ପ୍ରତିଷ୍ଠା କରାଯାଇଛି ।

୧୯୮୧ ରେ ଶୋଚନୀୟ ଅବସ୍ଥାରେ ଥିବା ହୋମିଓପାଥି କଲେଜକୁ ମୁଁ ହାତକୁ ନେଲି । ବ୍ୟକ୍ତିଗତ ଭାବରେ ମୁଖ୍ୟମନ୍ତ୍ରୀଙ୍କୁ କଲେଜଟିକୁ ହାତକୁ ନେବା ପାଇଁ ଅନୁରୋଧ କଲି । କଲେଜ ଚାଲୁଥିବା କୋଠାକୁ ମଧ୍ୟ ଅଧିଗ୍ରହଣ କରିବାକୁ ଅନୁରୋଧ କରିଥିଲି । ମୋର ଅନୁରୋଧ ରକ୍ଷା କରିଥିବାରୁ ତତ୍କାଳୀନ ମୁଖ୍ୟମନ୍ତ୍ରୀ ଶ୍ରୀ ଜାନକୀ ବଲ୍ଲଭ ପଟ୍ଟନାୟକ, କୁଳପତି ଓ୍ୱଲ୍ଲଭ ନବୀନ ସାହୁ ଏବଂ ପରବର୍ତ୍ତୀ ମୁଖ୍ୟମନ୍ତ୍ରୀ ଶ୍ରୀ ବିଜୁ ପଟ୍ଟନାୟକଙ୍କ ଠାରେ କୃତଜ୍ଞ ।

୧୯୮୭ ରେ ରାଜ୍ୟର ତତ୍କାଳୀନ ଶାସକ ଦଳର ନେତାଙ୍କୁ ପଦରୁ ହଟାଇବା ଲାଗି ଏକ ଅଭିଯାନ ଚାଲିଲା । ପ୍ରଧାନମନ୍ତ୍ରୀ ମୋତେ ଦିଲ୍ଲୀକୁ ଡକାଇଲେ । ମୁଁ ସେତେବେଳେ ଉତ୍କଳ ଏକ୍ସପ୍ରେସରେ ସମ୍ବଲପୁର ଆସି-ଥାଏ । କଟନୀ ଠାରେ ପୁଲିସ ଡ଼.ଆଇ.ଜି ଓ ଷ୍ଟେସନର ଅଧିକ୍ଷକ ମୋତେ ଉଠାଇଲେ ଓ ଯଥାଶୀଘ୍ର ପ୍ରଧାନମନ୍ତ୍ରୀଙ୍କୁ ଦେଖାକରିବାକୁ କହିଲେ । ମୁଁ ଯାତ୍ରାପଥ-ପରିବର୍ତ୍ତନ କରି ପରଦିନ ଦିଲ୍ଲୀରେ ପହଞ୍ଚିଲି । ମୁଁ ପ୍ରଧାନମନ୍ତ୍ରୀ ଓ ଅନ୍ୟମାନଙ୍କ ସଙ୍ଗେ ଦେଖା କଲି, କିନ୍ତୁ ଆମର ଆଲୋଚନାର ବିଷୟ ପ୍ରକାଶ କରିବା ଉଚିତ ହେବ ନାହିଁ ।

୧୯୭୮ ରେ ଓଡ଼ିଶା ନାଗରିକ ସମିତି ଗଠିତ ହେଲା । ଶ୍ରୀ କ୍ଷୀରୋଦ ମିଶ୍ର ସମ୍ପାଦକ ଥିଲେ ଓ ମୁଁ ସଭାପତି ଥିଲି । ଏଯାବତ ସମିତିର ଅନେକ ଗୁଡ଼ିଏ ବୈଠକ ଅନୁଷ୍ଠିତ ହୋଇଯାଇଛି ।

୧୯୮୧ରେ ଉତ୍କଳ ଶିକ୍ଷା ଗବେଷଣା ଓ ରିଲିଫ୍ ସୋସାଇଟି ପଞ୍ଜିକୃତ ହେଲା । ଉତ୍ତରାଞ୍ଚଳ ରାଜସ୍ୱ କମିସନର ଅଧ୍ୟକ୍ଷ, ଜିଲ୍ଲାପାଳ ପ୍ରୋ-ଚେୟାରମେନ ବା ଅଧ୍ୟକ୍ଷ ଏବଂ ମୁଁ ସମ୍ପାଦକ ହେଲି । ଏହି ସୋସାଇଟି ଜନସାଧାରଣଙ୍କଠାରୁ ଅଢ଼େଇଲକ୍ଷ ଟଙ୍କା ସଂଗ୍ରହକରି ବେଙ୍କରେ ଗଚ୍ଛିତ ରଖିଛି । ଯେ କୌଣସି ଜନ ସାଧାରଣୀୟ ସ୍ୱାର୍ଥ ଅନୁଷ୍ଠାନରେ ଲାଗିବ ।

୧୯୮୦ରେ ଓଡ଼ିଶା ତଥା ଭାରତୀୟ ରାଜନୀତିରେ ଟଣା ଓଟରା ଚାଲିବା ହେତୁ ମୁଁ ଲୋକସଭା ନିର୍ବାଚନ ସଭ୍ୟହେବାକୁ ମନା କରିଦେଲି । କିନ୍ତୁ, ମୋ ପାଇଁ ପରିସ୍ଥିତି ଅନୁକୂଳ ଥିଲା । ଶ୍ରୀମତୀ ଇନ୍ଦିରା ଗାନ୍ଧି ଜାନକୀ ବଲ୍ଲଭ ପଟ୍ଟନାୟକ, କାହ୍ନୁଚରଣ ଲେଙ୍କା, ଲକ୍ଷ୍ମଣ ମଲ୍ଲିକ, ରାମଚନ୍ଦ୍ର ରଥ, ସାଧାରଣ ସମ୍ପାଦକ ଏ.ଆର୍. ଆନ୍ତୁଲେ ପ୍ରମୁଖ ବନ୍ଧୁଙ୍କ ଜରିଆରେ ପ୍ରବର୍ତ୍ତାଇବା ସତ୍ତ୍ୱେ ମୁଁ ସକ୍ରିୟ ରାଜନୀତିରୁ ଅବସର ନେଲି । କିନ୍ତୁ, ୧୯୮୨ରେ ପ୍ରଧାନମନ୍ତ୍ରୀ ଶ୍ରୀମତୀ ଗାନ୍ଧି ଜିଦ୍ ଧରି କହିଲେ, ବିଧ୍ୱସ୍ତ ନିର୍ବାଚନକୁ ଦୃଷ୍ଟିରେ ରଖି ମୋତେ ରାଜ୍ୟସଭା ଯିବାକୁ ହେବ । ତଦନୁସାରେ ୧୯୮୨ ରୁ ୧୯୮୮ ପର୍ଯ୍ୟନ୍ତ ମୁଁ ରାଜ୍ୟସଭା ସଦସ୍ୟ ହୋଇ ରହିଲି । ବର୍ତ୍ତମାନ କେବଳ ସମାଜସେବା କରୁଛି । ମୋର ପିତା ଓ ମାନ ଭାଇର ସ୍ମୃତିରେ ଏକ ପ୍ରଥମ ଶ୍ରେଣୀର ଚକ୍ଷୁ ଚିକିତ୍ସାଳୟ ଏବଂ ମହା-ବିଦ୍ୟାଳୟଟିଏ ପ୍ରତିଷ୍ଠା କରିବାକୁ ଇଚ୍ଛା ପ୍ରକାଶ କରୁଛି । ମୋର ବାସଭବନକୁ ଲାଗିଥିବା ଚାରି ଏକର୍ ଜମି ବିକ୍ରୟ କରି ସେହି ଅର୍ଥରେ ଏ ଅନୁଷ୍ଠାନ ପ୍ରତିଷ୍ଠା କରିବାକୁ ଚାହେଁ । ମୁଁ ଆଶା କରେ ଏହି ଜମି ବିକ୍ରୟ କରି ଟଙ୍କାତକ ଏକ ବେଙ୍କରେ ଜମା କରିବା ପର୍ଯ୍ୟନ୍ତ ଭଗବାନ ମୋତେ ବଞ୍ଚି ରହିବାକୁ ସହାୟ ହେବେ । ମୁଁ ୧୯୮୯ରୁ ବୃକକ୍ ରୋଗରେ ପୀଡ଼ିତ । ଇଶ୍ୱରଙ୍କ ଅନୁଗ୍ରହରେ ବଞ୍ଚିରହିଛି ।

୧୯୭୧ ଓଡ଼ିଶା ବିଧାନସଭା ନିର୍ବାଚନ ପରେ ପରେ ମୁଁ ମୋର ପୁରୁଣା ଢଙ୍ଗରେ ମନନିବେଶ କରୁଛି । ବଗିଚା ଓ ପଶୁ ପାଳନ ସହ ଘରର ସୁଦୃଶ ବଶିଷ୍ଟ ପାଠାଗାରର ବିକାଶ କରିବାରେ ମଧ୍ୟ ସମୟ ଦେଉଛି । ମୁଁ ଯେତେବେଳେ ଯେଉଁ ସରକାରୀ କ୍ୱାର୍ଟରରେ ରହିଛି ସେଠାରେ ଉଦ୍ୟାନ କରିଛି । ମୁଁ ଭୁବନେଶ୍ୱରରେ ଥିବା କ୍ୱାର୍ଟର ଗୁଡ଼ିକୁ ଦେଖିଲେ ଏବେ ମଧ୍ୟ ତାହା ଦୃଷ୍ଟି ଗୋଚର ହେବ । ସେହିପରି ମୁଁ ରହୁଥିବା ସମ୍ବଲପୁର ଭିତରବସ୍ତିର ଘରର ବଗିଚା ସହ ଓଡ଼ିଶାର ଏକ ଶ୍ରେଷ୍ଠ ଆଇନ ପାଠାଗାରର ମୁଁ ଅଧିକାରୀ ଥିଲି । ୧୯୭୦ ରେ ସେ ପୁସ୍ତକ ଗୁଡ଼ିକୁ ମୁଁ ବିକ୍ରୟ କରିଦେଲି । ତା' ପରିବର୍ତ୍ତେ ମୁଁ ଅତ୍ୟନ୍ତ ପ୍ରାଚୀନ ଓ ଆଧୁନିକ ସାଧୁସନ୍ଥ ମାନଙ୍କର ଜୀବନୀ, ରାଜନୈତିକ ଓ ବିଶିଷ୍ଟ ବ୍ୟକ୍ତି ମାନଙ୍କ ଜୀବନୀ, ବିଶ୍ୱ ଇତିହାସ, ଧର୍ମ, ଦର୍ଶନ, ବେଦ ଉପନିଷଦ, ମହାକାବ୍ୟ, ଧର୍ମଶାସ୍ତ୍ର ବିଷୟକ ଦୁର୍ଲଭ ପୁସ୍ତକ ଏବଂ ରାମକୃଷ୍ଣ ମିଶନ,

ଡ଼ାଇଜନ ଲାଇଫ ଯୋଗାଇଛି, ତନ୍ମଧ୍ୟ ମିଶନ ଏବଂ ଅନ୍ୟାନ୍ୟ ସଂସ୍ଥାଦ୍ୱାରା ପ୍ରକାଶିତ ପ୍ରାୟ ସମସ୍ତ ପୁସ୍ତକ ମୋ ପାଠାଗାରରେ ସଂଗୃହୀତ ହୋଇ ରହିଛି । ଏହାବ୍ୟତୀତ କଳା ବିଜ୍ଞାନ ନୃତତ୍ତ୍ୱ ଉପରେ ଅନେକ ସତନ୍ତ୍ର ପୁସ୍ତକର ପରିପୂର୍ଣ୍ଣ ପାଠାଗାରଟି ଅନନ୍ୟ ଅଟେ । ଏହି ସଞ୍ଚୟ ମୋତେ ଅସୀମ ଶାନ୍ତି ଓ ତୃପ୍ତି ପ୍ରଦାନ କରୁଛି । ଭାରତର ପ୍ରାଚୀନ ଜ୍ଞାନ ମହତ୍ତ୍ୱକୁ ସମ୍ମାନ ଦେବା ଶିଖାଉଛି । ଅର୍ଥ ଓ ବିତ୍ତ ଯାହା ସମକାଳୀନ ରାଜନୀତିଜ୍ଞ ମାନଙ୍କୁ ମୋହାଚ୍ଛନ୍ନ କରୁଛି, ମୁଁ ସେହି ଆସକ୍ତିରୁ ସମ୍ପୂର୍ଣ୍ଣ ଊର୍ଦ୍ଧ୍ୱରେ ।

ଶ୍ରେଷ୍ଠ କୃତୀ ଛାତ୍ରଛାତ୍ରୀ ମାନଙ୍କୁ ଉତ୍ସାହିତ କରିବା ପାଇଁ ମୁଁ ସେଣ୍ଟ ଯୋସେଫ କନ୍‌ଭେଣ୍ଟ ସ୍କୁଲ, ସମ୍ବଲପୁର ମହିଳା କଲେଜ, ଚନ୍ଦ୍ରଶେଖର ବେହେରା ଜିଲ୍ଲା ସ୍କୁଲ ଏବଂ ଲେଡ଼ିଲୁଇସ ଗାର୍ଲସ ହାଇସ୍କୁଲ ଆଦିରେ ବାର୍ଷିକ ପରୀକ୍ଷା ମାନଙ୍କରେ ଶ୍ରେଷ୍ଠତା ପାଇଁ ପୁରସ୍କୃତ କରିବା କ୍ରମରେ ସିଲ୍‌ଭର ମାନ ପିତାମହୀ ବୃନ୍ଦାବତୀ ବାବୁ, ମାଁ ଦେବଭୂତି ବାବୁ, ପିଉସୀ ଜନକ ପ୍ରିୟା ଦେଓ, ଏବଂ ଭଉଣୀ ପ୍ରସନ୍ନ କୁମାରୀଙ୍କ ସ୍ମୃତିରେ ପ୍ରଦାନ କରୁଛି । ଏହି ଧାରା ମୋର ପିତା ଓ ଭାଇଙ୍କ ନାମରେ ମଧ୍ୟ ଚାଲିବ । ସମ୍ବଲପୁରୀ ଲିଖିତ ଓ କଥିତ ଭାଷାର ବିକାଶ ପାଇଁ ମୋର ପିତାମହ ମଦନ ମୋହନ ବାବୁଙ୍କ ସ୍ମୃତିରେ କିଛି ଅର୍ଥର ଏକ ପାଣ୍ଠି ଗଠନ କରିବାକୁ ସ୍ଥିର କରିଛି । ସମ୍ବଲପୁରୀ ଭାଷା ଓଡ଼ିଆ ଭାଷାର ବିରୋଧ ନକରି ପରିପୂରକ ଭାଷା ରୂପେ ସମୃଦ୍ଧି ଲାଭ କରିବ ।

ସେହିପରି ମୋର ସ୍ୱର୍ଗତ ସାନ ଭାଇ ପ୍ରଫୁଲ୍ଲ କୁମାରର ସ୍ମୃତିରେ Who is who ଢାଞ୍ଚାରେ ସମ୍ବଲପୁର ଓ ସଂଲଗ୍ନ ପଶ୍ଚିମ ଓଡ଼ିଶାର ଜିଲ୍ଲା ମାନଙ୍କର ବିଶିଷ୍ଟ ବ୍ୟକ୍ତି ମାନଙ୍କର ସଂକ୍ଷିପ୍ତ ଜୀବନୀ ପ୍ରସ୍ତୁତ କରିବା ଉଦ୍ଦେଶ୍ୟରେ ମଧ୍ୟ ଏକ ପାଣ୍ଠି ସ୍ଥାପନ ପାଇଁ ମନସ୍ଥ କରିଛି ।

ଓଡ଼ିଶା ତଥା ଓଡ଼ିଆ ଭାଷାଭାଷୀ ସଂଶ୍ଳିଷ୍ଟାଞ୍ଚଳର ସମସ୍ତ ଗଣ୍ୟମାନ୍ୟ ବ୍ୟକ୍ତିଙ୍କ ନିକଟକୁ ଗୋଟିଏ ସଂକ୍ଷିପ୍ତ ଜୀବନୀ ସମ୍ବଳିତ କୋଷ ପ୍ରଣୟନ ସକାଶେ ଆବଶ୍ୟକ ତଥ୍ୟ ଯୋଗାଇବା ପାଇଁ ଚିଠି ଲେଖି ସାରିଛି । ଓଡ଼ିଶା ତଥା ଓଡ଼ିଶା ବାହାରେ ଥିବା ଓଡ଼ିଆ ଭାଷାଭାଷୀ ସମସ୍ତ ନାଗରିକଙ୍କ ମଧ୍ୟରେ ଜନ୍ମସ୍ଥାନ ନିର୍ବିଶେଷରେ ଐକ୍ୟସୂତ୍ର ପ୍ରତିଷ୍ଠା କରିବାରେ ଏହା ସାହାଯ୍ୟ କରିବ । ଏବଂ ଆଜି ଓ ଆସନ୍ତା କାଲିର ବଂଶଧର ଓଡ଼ିଶା

ମାଟିରେ ଜନ୍ମ ନେଇଥିବାରୁ ଗର୍ବ ଅନୁଭବ କରିପାରନ୍ତି ।

ଜାତୀୟ ଇତିହାସରେ ମଧ୍ୟ ଓଡ଼ିଶା ତାର ଯଥାର୍ଥ ସ୍ଥାନ ପାଇପାରି ନାହିଁ । କେବଳ ମହାତ୍ମା ଗାନ୍ଧି ଓଡ଼ିଶାକୁ ଉପଯୁକ୍ତ ସ୍ୱୀକୃତି ପ୍ରଦାନ କରିଥିଲେ । କିନ୍ତୁ, ତାଙ୍କର ତିରୋଧାନ ପରେ ଓଡ଼ିଶା ପୁଣିଥରେ ପାଶ୍ଚାତ ପଟକୁ ଚାଲିଯାଇଛି । ଛତ୍ରପତି ଶିବାଜୀ ଓ ରଣଜିତ ସିଂଙ୍କ ଠାରୁ ମଧ୍ୟ ମହାନ ବୀର ସୁରେନ୍ଦ୍ର ସାଏଙ୍କୁ ଉପଯୁକ୍ତ ମର୍ଯ୍ୟାଦା ପ୍ରଦାନ କରିବା ପାଇଁ ଏ ଦେଶକୁ ଶହେବର୍ଷ ଲାଗିଗଲା । ରାଜ୍ୟର ସ୍ୱାର୍ଥ ଦୃଷ୍ଟିରୁ, ଯେଉଁ ଅଚର୍ଚ୍ଚିତ ବରପୁତ୍ର ବିସ୍ମୃତି ଗର୍ଭରେ ଲୀନ ହୋଇଯାଇଛନ୍ତି, ସେମାନଙ୍କର ସ୍ମୃତିକୁ ଉଜ୍ଜୀବିତ କରିବାକୁ ହେବ । ଏହିପରି ପ୍ରତିଭାବାନ ମାନଙ୍କ ଭିତରେ ମଧୁସୂଦନ ଦାଶ, ପାରଳାଖେମୁଣ୍ଡିର ମହାରାଜା କୃଷ୍ଣଚନ୍ଦ୍ର ଗଜପତି, ଗୋପବନ୍ଧୁ ଦାଶ, ଡାକ୍ତର ଜନାର୍ଦ୍ଦନ ପୂଜାରୀ, ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, ସାରଙ୍ଗଧର ଦାସ, ଡକ୍ଟର ହରେକୃଷ୍ଣ ମହତାବ, ବିଶ୍ୱନାଥ ଦାସ, ଏବଂ ଚନ୍ଦ୍ରଶେଖର ବେହେରା ପ୍ରମୁଖ ଅନ୍ୟତମ ।

ଆମର ପରମ ସୌଭାଗ୍ୟ ଯେ ଆମେମାନେ ପବିତ୍ର ଭାରତ ଭୂମିରେ ଜନ୍ମ ନେଇଛୁ । ଶହେବର୍ଷ ପୂର୍ବେ ରଚିତ ବନ୍ଦେ ମାତରଂ ସ୍ୱାଧୀନତା ସଂଗ୍ରାମ ବେଳେ କୋଟି କୋଟି ଭାରତ ବାସୀଙ୍କର ହୃଦୟରେ ପ୍ରେରଣା ଜାଗ୍ରତ କରିଥିଲା । ପରବର୍ତ୍ତୀ କାଳରେ ମଧ୍ୟ ଓଡ଼ିଶା ଏବଂ ଭାରତବାସୀଙ୍କୁ ସେହି ଅମର ସଙ୍ଗୀତ ଅନୁପ୍ରାଣିତ କରୁଥାଉ ।

ଜୟ ଭାରତ ।



